NATAKA TATWA BICHAR
By Dr. Narayan Sahoo
Published by Vidyapuri, Cuttack 753002

ISBN 81-7411-421-1

ପ୍ରଥମ ପ୍ରକାଶ ଫେବୃୟାରୀ ୨୦୦୩

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୯୦.୦୦

# ସୂଚୀ

## ପ୍ରଥମ ଅଧ୍ୟାୟ

# ନାଟକ

ମାନବ ଜୀବନ ଯେତେବେଳେ ଭାବରସ କଳ୍ପନାରେ ଭରପୂର ହୋଇଉଠେ, ସତ୍ୟ ଶିବ ସୁନ୍ଦରର ଆରାଧନା କରିବାକୁ ଆଗେଇ ଆସେ, ସେତେବେଳେ ଜନ୍ମନିଏ 'କବିତା' । ହେଲେ ଜୀବନ ଯେତେବେଳେ ଘନଘଟାମୟ ହୋଇଉଠେ, ଅର୍ଥାତ୍ ଜଟିଳ, ବ୍ୟାପକ ହୋଇଉଠେ ବା ବହୁ ଭାବ, ଚରିତ୍ର ଏବଂ ବସ୍ତୁ ସୁମନ୍ୱିତ ହୋଇଉଠେ, ସେତେବେଳେ ଜନ୍ମ ନିଏ 'ଉପନ୍ୟାସ' । ଯେତେବେଳେ ଜୀବନ ବାରମ୍ବାର ଉତ୍‌ଥାନ ପତନ ମଧ୍ୟଦେଇ ନାନା ବିରୋଧାଭାସର ସମ୍ମୁଖୀନ ହୁଏ, ଏକ ପରିପୂର୍ଣ୍ଣ ସତ୍ୟର ଅବତାରଣା କରେ, ସେତେବେଳେ ଜନ୍ମ ନିଏ 'ନାଟକ' ।

ଜୀବନର ସକଳ ଛନ୍ଦ ନାଟକରେ ଫୁଟିଉଠେ, କେତେବେଳେ ଅବିକଳ ଭାବେ, ପୁଣି କେତେବେଳେ କିଛିଟା କଳ୍ପନାର ସମ୍ମିଶ୍ରଣରେ । ଜୀବନର ଇସ୍ତାହାରକୁ ଘୋଷଣା କରେ ନାଟକ । ଜୀବନରେ ଘନଘଟା ବା ଉତ୍ତେଜନା ନ ରହିଲେ ନାଟକ ହୁଏ ନାହିଁ । ମଣିଷ ଜୀବନର ନାନା ଦାଉଧକ୍‌କା, ଯନ୍ତ୍ରଣା, ବ୍ୟର୍ଥତା, ନିଷ୍ଫଳତା, ବିଶ୍ୱାସଘାତକତା, ପ୍ରବୃତ୍ତିର ସଂଘର୍ଷ, ଦ୍ୱନ୍ଦ୍ୱ, ସଂଘାତ ଆଦିକୁ ନେଇ ଗଢ଼ିଉଠେ ନାଟକ । ଏସବୁ ଉପାଦାନ ନାଟକରେ ରହିଲେ ଯେ ତାହା ନାଟକ ହୋଇଯିବ, ତାହା ନୁହେଁ । ଏଗୁଡ଼ିକ ଯେତେବେଳେ ନାଟକରେ ଗୋଟିଏ ଗୋଟିଏ ବିଶିଷ୍ଟ ଶିଳ୍ପ ଭାବେ ରୂପନିଏ, ସେତେବେଳେ ଜନ୍ମ ନିଏ ନାଟକ । ଏହି ଶିଳ୍ପରୀତି ହିଁ ନାଟକକୁ ସାହିତ୍ୟର ଅନ୍ୟ ବିଧାଠାରୁ ସ୍ୱତନ୍ତ୍ର କରି ଗଢ଼ି ତୋଳିଥାଏ ।

ନାଟକ ହେଉଛି ବିଶ୍ୱର ସର୍ବପ୍ରାଚୀନ ଐତିହ୍ୟର ଏକ ଆଧୁନିକ ସଂସ୍କରଣ । ପ୍ରାଚୀନ ପ୍ରସ୍ତରଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ନାନାବିଧ ପରିବର୍ତ୍ତନ ମଧ୍ୟଦେଇ ନାଟକ ତାର ରୂପ ବାରମ୍ବାର ବଦଳାଇ ଆସିଛି । ନାଟକ ଯେହେତୁ ଏକ ମିଶ୍ରକଳା, ଏଥିରେ ଦର୍ଶକ, ଅଭିନେତା, ଅନ୍ୟ ପ୍ରୟୋଗଶିଳ୍ପୀର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ଆଦିମ ମଣିଷର ନୃତ୍ୟସଙ୍ଗୀତ ମଧ୍ୟରୁ ନାଟକ ଆସିଥିବା ଅନୁମାନ କରାଯାଏ । ନାଟକରେ ରହିଛି ସକଳ ପ୍ରକାର ଜ୍ଞାନ, କଳା, ଶିଳ୍ପ, ଯୋଗ, ବିଦ୍ୟା, କର୍ମ ଇତ୍ୟାଦି ।

ପ୍ରଥମେ ଲୋକଚିତ୍ତକୁ ଆନନ୍ଦ ଦେବାପାଇଁ ନାଟକର ସୃଷ୍ଟି ହୋଇଥିଲା । ପରେ ଏହା ନାନା ସମସ୍ୟା ଦ୍ୱାରା ଜଡ଼ିତ ହୋଇ ପଡ଼ିଲା । ଫଳରେ ନାଟକ ଭିତରେ ଏକ

ସଚେତନ ପ୍ରୟାସ ମୁଣ୍ଡ ଟେକିଲା । ମଣିଷର ଚେତନାକୁ ଏହା ପ୍ରସାରିତ କଲା ଏବଂ ଜ୍ଞାନକୁ ମାର୍ଜିତ କଲା । ଗଣଚେତନା ଉଦ୍ରେକ କରିବା ହେଲା ଏହାର ସ୍ୱର । ଗଣଜୀବନକୁ ଛାଡ଼ି ନାଟକର ପରିକଳ୍ପନା ମଧ୍ୟ ଅସମ୍ଭବ ।

ସାହିତ୍ୟର ଅନ୍ୟ ବିଭାଗଠାରୁ ନାଟକ ଏକ ସ୍ୱତନ୍ତ୍ର ସୃଷ୍ଟି । ଏହାର ମଧ୍ୟ ନାନା ଲକ୍ଷଣ ରହିଛି, ଯାହା କାବ୍ୟ ଉପନ୍ୟାସଠାରୁ ତାକୁ ପୃଥକ୍ କରି ଗଢ଼ି ତୋଳିଥାଏ । ସବୁଠୁ ପ୍ରଧାନ ଲକ୍ଷଣଟି ହେଲା ନାଟକୀୟତା । ଯେଉଁସବୁ ବୈଶିଷ୍ଟ୍ୟ ପାଇଁ ନାଟକ ଅଲଗା ରୂପେ ବାରି ହୋଇଯାଏ, ତାହା ହେଉଛି ନାଟକୀୟତା । ଆରିଷ୍ଟଟଲ ଏବଂ ଭରତ ନାଟକର ବହୁ ଲକ୍ଷଣ ନିର୍ଣ୍ଣୟ କରିଛନ୍ତି । ଆରିଷ୍ଟଟଲ ନାଟ୍ୟକ୍ରିୟା (dramatic action) ଏବଂ ଆନୁଷଙ୍ଗିକ ଦୃଶ୍ୟଧର୍ମିତାକୁ ନାଟକର ପ୍ରଧାନ ଲକ୍ଷଣଭାବେ ଗ୍ରହଣ କରିଛନ୍ତି । ଆଚାର୍ଯ୍ୟ ଭରତ ଦୃଶ୍ୟତ୍ୱ, କାବ୍ୟତ୍ୱ, ଶ୍ରବ୍ୟତ୍ୱ, କୌତୂହଳ ସୃଷ୍ଟି, ବୈଚିତ୍ର୍ୟ ସୃଷ୍ଟି, ଜନସମ୍ପର୍କ ଆଦିକୁ ନାଟକର ଲକ୍ଷଣ ଭାବେ ଗ୍ରହଣ କରିଛନ୍ତି । ପରେ ପରେ ଏଥି ସହିତ ମୋଡ଼ିହୋଇ ଯାଇଛି ପରବର୍ତ୍ତୀ କାଳରେ ଉତ୍କଣ୍ଠା, ଆକସ୍ମିକତା, ବିସ୍ମୟ, ସାଙ୍ଗୀତଧର୍ମିତା, ବିଚାରବିତର୍କ ଇତ୍ୟାଦି । ଏହିପରି ନାଟକର ନାନା ଲକ୍ଷଣ ଏବଂ ବୈଶିଷ୍ଟ୍ୟ ଦେଖିବାକୁ ମିଳେ ।

## ନାଟକର ସଂଜ୍ଞା

ନାଟକର ସଂଜ୍ଞା ହେଉଛି ବ୍ୟାପକ । ଆରିଷ୍ଟଟଲ ଟ୍ରାଜେଡ଼ି ଆଲୋଚନା ପ୍ରସଙ୍ଗରେ କହିଛନ୍ତି, ନାଟ୍ୟଘଟଣା ବା ନାଟ୍ୟକ୍ରିୟାର ଅନୁକରଣ ହେଉଛି ନାଟକ । ଭରତଙ୍କ ମତରେ, 'ଲୋକବୃତ୍ତର ଅନୁକରଣ' ହେଉଛି ନାଟକ । ଭିକ୍ଟର ହୁଗୋଙ୍କ ମତରେ, ନାଟକ ହେଉଛି ଆଲୋକ ବିଚ୍ଛୁରଣର ଏକ ଦର୍ପଣ, ଯାହା ରଙ୍ଗିନ ରଶ୍ମିକୁ ମ୍ଳାନ କରିବା ପରିବର୍ତ୍ତେ ଗ୍ରହଣ କରିଥାଏ ଓ ଘନୀଭୂତ କରିଥାଏ । ପରିଶେଷରେ ଏକ ଶିଖା ରୂପରେ ଏହା ଜଳିଉଠେ । ଯଥାର୍ଥରେ ହୁଗୋ କହିଛନ୍ତି - The drama therefore, must be a focussing mirror, which instead of making weaker, collects and condenses the coloured rays which will make of a gleam a light, of a light a flame. Then only is the drama worthy being counted. (Preface to Cromwell)

ନାଟକର ବିଭିନ୍ନ ଉପାଦାନକୁ ଆଧାର କରି ମଧ୍ୟ ଏହାର ସଂଜ୍ଞା ନିରୂପଣ କରାଯାଇଛି, ଦ୍ୱନ୍ଦ୍ୱ, ସଂଘାତ ଆଦି ଦୃଷ୍ଟିକୋଣରୁ । ନାଟ୍ୟଲକ୍ଷଣକୁ ନେଇ ନାନା ମତଭେଦ ରହିଛି । ତେଣୁ ଏକ ସର୍ବଜନଗ୍ରାହ୍ୟ ମତ ନିରୂପଣ କରିବା କଷ୍ଟକର ବ୍ୟାପାର । ତଥାପି ଅଧ୍ୟାପକ ନିକଲ ଏଇଭଳି ଏକ ସଂଜ୍ଞା ପ୍ରଦାନ କରିବାକୁ ଚେଷ୍ଟା କରିଛନ୍ତି - Drama is the art of expressing ideas about life in such a manner as to render that expression capable of interpretation by actors and likely to interest

an audience assembled to hear the words and witness the actions. ଅର୍ଥାତ୍ ନାଟ୍ୟକଳା ହେଲା, କଳାକାର ମଣ୍ଡଳୀ କର୍ତ୍ତୃକ ପରିବେଷିତ ଜୀବନ ସଂପର୍କୀୟ ଏକ ବିଶେଷ ଧାରଣାର ପରିପ୍ରକାଶ, ଯାହା ଶ୍ରବଣ ଏବଂ ଦର୍ଶନ ଦ୍ୱାରା ସମବେତ ଦର୍ଶକମାନଙ୍କୁ ଆନନ୍ଦ ଦେଇପାରିବ ।

ମାନବ ଜୀବନର ଅଭିଜ୍ଞତା ଭିତରୁ ନାଟକ ଜନ୍ମ ନିଏ । ଏହା ଦର୍ଶକ ଚିତ୍ତରେ ଆନନ୍ଦ, ଉତ୍କଣ୍ଠା, କୌତୂହଳ, ଉତ୍ତେଜନା ଆଦି ସୃଷ୍ଟି କରିବାକୁ ସକ୍ଷମ ହୋଇଥାଏ । ଇଂରାଜୀ Drama ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ରୂପେ ଆମେ 'ନାଟକ' ଶବ୍ଦକୁ ବ୍ୟବହାର କରୁଛୁ । 'ଡ୍ରାମା' ଶବ୍ଦର ବ୍ୟାପକ ଅର୍ଥ ରହିଛି । ଯେକୌଣସି ଅନୁକରଣାତ୍ମକ ଅଭିନୟ ଅନୁଷ୍ଠାନକୁ ଡ୍ରାମା କହିବାରେ ଆଦୌ ବାଧା ନାହିଁ । ତାହା ଗୁରୁଗମ୍ଭୀର ଟ୍ରାଜେଡ଼ି ହୋଇପାରେ, ଲଘୁରସାତ୍ମକ କମେଡ଼ି ହୋଇପାରେ, ମୂକ ଅଭିନୟ ମଧ୍ୟ ହୋଇପାରେ । ତେଣୁ ଡ୍ରାମା ହେଉଛି ଉପସ୍ଥାପନ ଯୋଗ୍ୟ ଏକ ସୁପରିକଳ୍ପିତ ରଚନା ଯାହା କଳାକାରମାନଙ୍କଦ୍ୱାରା ଅଭିନୀତ ହୋଇପାରେ । ସବୁଠି ଡ୍ରାମାର ଏଇ ଅର୍ଥ ଦେଖିବାକୁ ମିଳେ ।

'ଡ୍ରାମା' ଛଡ଼ା ଇଂରାଜୀରେ 'Play' ଶବ୍ଦର ମଧ୍ୟ ପ୍ରଚଳନ ରହିଛି । ତେବେ Play ଶବ୍ଦର ଅର୍ଥ ମଧ୍ୟ ବ୍ୟାପକ । 'ଡ୍ରାମା' ଏବଂ 'ପ୍ଲେ' ଉଭୟ ଶବ୍ଦର ପ୍ରୟୋଗରେ ମଧ୍ୟ ସାମ୍ୟ ପରିଲକ୍ଷିତ ହୁଏ । ଏଣୁ କୁହାଯାଇଛି - "In the broadest sense drama is simply play." ଡ୍ରାମା ସହିତ ଆମ ନାଟକ ଶବ୍ଦଟିର ଅନେକ କ୍ଷେତ୍ରରେ ସାଦୃଶ୍ୟ ରହିଛି । ସଂସ୍କୃତ ରୂପକ ଏବଂ ଦୃଶ୍ୟକାବ୍ୟ ଯେଉଁ ଅର୍ଥରେ ବ୍ୟବହୃତ, ତା' ସହିତ ଇଂରାଜୀ 'ଡ୍ରାମା' ଏବଂ 'ପ୍ଲେ'ର ସାଦୃଶ୍ୟ ଅଛି । ଦୃଶ୍ୟକାବ୍ୟ, ରୂପକ ବ୍ୟତୀତ ସଂସ୍କୃତରେ 'ନାଟ୍ୟ' ଶବ୍ଦର ମଧ୍ୟ ପ୍ରୟୋଗ ରହିଛି । ଅଭିନୟ ସମୟରେ ମଞ୍ଚ ଉପରେ ଲୋକବୃତ୍ତ ବା ଜୀବନକାହାଣୀ ଦେଖିବାକୁ ମିଳେ ବା ଶୁଣିବାକୁ ମିଳେ, ତାହା ହେଲା ସଂସ୍କୃତର ଦୃଶ୍ୟକାବ୍ୟ । ଗୋଟିଏ ଦିଗରେ ଏହା ଦୃଶ୍ୟ ହୋଇଥିବା ବେଳେ, ଅନ୍ୟ ଦିଗରେ ତାହା କାବ୍ୟ । ଅଭିନୟ ଭିତରେ ଏହା ଅନ୍ୟର ରୂପ ଅନୁକରଣ କରୁଥିବାରୁ, ଏହାର ନାମ ରୂପକ । ନାଟ୍ୟ ଶବ୍ଦର ମୂଳ ଅର୍ଥ ଥିଲା, ଭରତଙ୍କ ପ୍ରବର୍ତ୍ତିତ ନୃତ୍ୟ, ଗୀତ, ବାଦ୍ୟର ଏକ ସମ୍ମିଳିତ ପ୍ରକ୍ରିୟା । ପରେ ଏହା ଅଭିନୟକୁ ବୁଝାଇଲା ।

ଅଭିନୟରେ ପାତ୍ରପାତ୍ରୀଙ୍କର ହାବଭାବ ଏବଂ ଅବସ୍ଥାର ଅନୁକରଣ କରାଯାଉଥିବାରୁ ଏହାକୁ ଦୃଶ୍ୟକାବ୍ୟ ଓ ନାଟ୍ୟ କୁହାଯାଏ । ତେବେ 'ଡ୍ରାମା' ଏବଂ 'ପ୍ଲେ' ଦୁଇଟିଯାକ ଶବ୍ଦର ସଙ୍ଗରେ ନାଟ୍ୟ ଏକ ଅବିଚ୍ଛିନ୍ନ ଯୋଗସୂତ୍ର ରକ୍ଷା କରିପାରିଛି । ସାଧାରଣତଃ ଆମେ 'ନାଟକ' ଶବ୍ଦଟିକୁ ଅଧିକ ବ୍ୟବହାର କରିଥାଉ । ସଂସ୍କୃତର ଦଶରୂପକ ବା ଦୃଶ୍ୟକାବ୍ୟ ମଧ୍ୟରେ ଗୋଟିଏର ନାମ ହେଉଛି 'ନାଟକ' । ସଂସ୍କୃତ ଦୃଶ୍ୟକାବ୍ୟରେ ଏହାର ଅଙ୍କ, କଥାବସ୍ତୁ, ରସ ପରିଣାମ ଆଦି ବିଷୟରେ ସୂଚନା ପ୍ରଦତ୍ତ ହୋଇଛି । ତେବେ ସଂସ୍କୃତ 'ନାଟକ' ରୂପକର ଲକ୍ଷଣଗୁଡ଼ିକୁ ଆଖି ଆଗରେ ରଖି ଆମେ 'ନାଟକ'କୁ .

ଗ୍ରହଣ କରି ନାହୁଁ । ଏଇଟିକୁ ଆମେ ଇଂରାଜୀ 'ଡ୍ରାମା' ଏବଂ 'ପ୍ଲେ' ଶବ୍ଦରୁ ଗ୍ରହଣ କରିନେଇଛୁ । ସଂସ୍କୃତ 'ନାଟ୍ୟ' ଶବ୍ଦଟି ସବୁଠୁ ସୁନିର୍ବାଚିତ ମନେହୁଏ । ବହୁଳ ବ୍ୟବହାର ଫଳରେ ନାଟକ ଶବ୍ଦଟି ସର୍ବଜନପ୍ରିୟ ହୋଇଉଠିଛି । ତେବେ ଇଂରାଜୀ 'ଡ୍ରାମା' ଏବଂ 'ପ୍ଲେ' କୁ ବୁଝାଇବାକୁ ଯାଇ ଆମେ ସାଧାରଣତଃ 'ନାଟକ', 'ନାଟ୍ୟ' ଏବଂ 'ଦୃଶ୍ୟକାବ୍ୟ' ଏହି ତିନୋଟି ଶବ୍ଦକୁ ବ୍ୟବହାର କରୁଛୁ ।

## ଭରତ

ଭାରତୀୟ ସାହିତ୍ୟରେ ଭରତମୁନିଙ୍କ ନାଟ୍ୟଶାସ୍ତ୍ରର ବିଶେଷ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ଏହି ଗ୍ରନ୍ଥରେ ନାଟ୍ୟ ବିଷୟରେ ସବିଶେଷ ତଥ୍ୟ ଅଛି । ଏହାଛଡ଼ା ଏଥିରେ ଅନେକ କଳା, ବିଦ୍ୟା, ଶାସ୍ତ୍ର, ଶିଳ୍ପ ଆଦିର ବର୍ଣ୍ଣନା ସ୍ଥାନ ପାଇଛି । ନାଟକର ମୂଳତତ୍ତ୍ୱ, ରଙ୍ଗମଞ୍ଚ ତଥା ଅନ୍ୟ ଆବଶ୍ୟକୀୟ ନାଟ୍ୟବିଷୟକ ଉପାଦାନର ବିସ୍ତୃତ ବର୍ଣ୍ଣନା ସହିତ ତତ୍କାଳୀନ ସମାଜର ମନୋବୃତ୍ତି ଏବଂ ବୈଶିଷ୍ଟ୍ୟ ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । କଳାର ଯେକୌଣସି ବିଭବର ସୂକ୍ଷ୍ମାତିସୂକ୍ଷ୍ମ ବିବରଣୀ ଏଥିରୁ ମିଳେ । ଭାଷା, ଅଳଙ୍କାରଶାସ୍ତ୍ର, ସଙ୍ଗୀତ, ନୃତ୍ୟ, ଚିତ୍ରକଳା, ରଙ୍ଗକଳା, ସ୍ଥାପତ୍ୟ, ମୂର୍ତ୍ତିକଳା ଆଦିର ବିସ୍ତୃତ ବର୍ଣ୍ଣନା ରହିଛି । ପ୍ରାଚୀନ ଭାରତୀୟ ସଭ୍ୟତା ଏବଂ ସଂସ୍କୃତି ବିଷୟରେ ନାଟ୍ୟଶାସ୍ତ୍ର ହେଉଛି ଏକ ପ୍ରାମାଣିକ ଗ୍ରନ୍ଥ ।

ଭରତଙ୍କ ସମୟ ନେଇ ନାନା ମତ ଦେଖାଯାଏ । କେତେକ କହନ୍ତି ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀ, ପୁଣି କେତେକଙ୍କ ମତରେ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀ । ପୁଣି କେତେକ ୨ୟ ଏବଂ ୩ୟ ଶତାବ୍ଦୀ ମାନନ୍ତି । ଜନ୍ ଏସ୍.କେ. ଦେ'ଙ୍କ ମତରେ ନାଟ୍ୟଶାସ୍ତ୍ରରେ ସ୍ଥାନିତ ସଙ୍ଗୀତ ଅଧ୍ୟାୟ ୪ର୍ଥ ଶତାବ୍ଦୀର, କିନ୍ତୁ ନାଟ୍ୟଶାସ୍ତ୍ରର ରୂପ ବାରମ୍ବାର ପରିବର୍ତ୍ତିତ ହୋଇଛି । ବର୍ତ୍ତମାନ ମିଳୁଥିବା ସଂସ୍କରଣ ୮ମ ଶତାବ୍ଦୀର ଶେଷଭାଗର ।

ଆଜି ଆମ ପାଖରେ ଅଳଙ୍କାରଶାସ୍ତ୍ର, ନାଟ୍ୟଶାସ୍ତ୍ର, ରସଶାସ୍ତ୍ର ବିଷୟକ ଯେଉଁ ଗ୍ରନ୍ଥ ଅଛି, ସେଥିରେ ସର୍ବପ୍ରାଚୀନ ହେଉଛି ନାଟ୍ୟଶାସ୍ତ୍ର । କାଳିଦାସଙ୍କ ବିକ୍ରମୋର୍ବଶୀୟ ନାଟକର ଗୋଟିଏ ସ୍ଥଳରେ (୨/୧୮) ଭରତଙ୍କ ସଙ୍କେତ ମିଳୁଛି । ଏହି ସମୟବେଳକୁ ଭରତ କେବଳ ନାଟ୍ୟାଚାର୍ଯ୍ୟ ନ ଥିଲେ, ପରନ୍ତୁ ଏକ ପୌରାଣିକ ବ୍ୟକ୍ତିତ୍ୱ ମଧ୍ୟ ଥିଲେ । ନାଟ୍ୟଶାସ୍ତ୍ରର ପ୍ରଥମ ଅଧ୍ୟାୟରେ ଭରତ ନାଟକର ଉତ୍ପତ୍ତି ବିଷୟ ବର୍ଣ୍ଣନା କରିଛନ୍ତି, ଯାହାର ସଙ୍କେତ କାଳିଦାସଙ୍କ ବିକ୍ରମୋର୍ବଶୀୟ ନାଟକର ପ୍ରଥମ ଅଙ୍କରୁ ମିଳୁଛି । ଏଣୁ ଭରତଙ୍କ ସମୟ କାଳିଦାସଙ୍କ ବହୁ ପୂର୍ବରୁ ପ୍ରାୟ ୨୦୦ ବର୍ଷ ପୂର୍ବରୁ । ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ଭରତଙ୍କ ସମୟକୁ ୨ୟ ଶତାବ୍ଦୀ ମାନି ନେଇଛନ୍ତି । ଡଃ ଏ.ବି. କୀଥ୍ ଭରତଙ୍କ କାଳ ତୃତୀୟ ଶତାବ୍ଦୀ ନିଶ୍ଚୟ କରିଛନ୍ତି । ଡଃ ମନମୋହନ ଘୋଷ ବିଭିନ୍ନ ଅଭିଲେଖର ଭାଷାକୁ ଅନୁଶୀଳନ କରି ନାଟ୍ୟଶାସ୍ତ୍ରର ବର୍ତ୍ତମାନ ରୂପର ସମୟ ୨ୟ ଶତାବ୍ଦୀ ନିର୍ଣ୍ଣୟ କରିଛନ୍ତି । ଅଭିଲେଖରେ ମିଳୁଥିବା ଶକ, ଯବନ ଆଦି ଶବ୍ଦ ନାଟ୍ୟଶାସ୍ତ୍ରରେ ମଧ୍ୟ ରହିଛି ।

ଭାସଙ୍କ ନାଟକରେ ପ୍ରସ୍ତାବନା, ସୂତ୍ରଧର, ପ୍ରେକ୍ଷକ, ଚାରୀ, ଗତି, ଭଦ୍ରମୁଖ, ହାବ, ଭାବ, ଆଦି ଶବ୍ଦ ଦେଖିବାକୁ ମିଳୁଛି, ଯାହା ନାଟ୍ୟଶାସ୍ତ୍ରରେ ବେଶ୍ ପରିଚିତ । ଏଣୁ ଡଃ ଘୋଷ ନାଟ୍ୟଶାସ୍ତ୍ରର ସମୟ ଭାସଙ୍କ ପୂର୍ବବର୍ତ୍ତୀ ଅର୍ଥାତ୍ ୨ୟ ଶତାବ୍ଦୀ ବୋଲି ମାନନ୍ତି ।

ଡଃ ସି. ସରକାର ନାଟ୍ୟଶାସ୍ତ୍ରରେ ମହାରାଷ୍ଟ୍ର ତଥା ନେପାଳର ଉଲ୍ଲେଖ ଥିବାକୁ ଆଧାର କରି ଏହା ୨ୟ ଶତାବ୍ଦୀର ବହୁ ପରର ବୋଲି ମତ ଦିଅନ୍ତି । ବାଣଭଟ୍ଟଙ୍କ କାଦମ୍ବରୀ ଏବଂ ହର୍ଷଚରିତରେ ଭରତଙ୍କ ପ୍ରବର୍ତ୍ତିତ ସଙ୍ଗୀତର ଉଲ୍ଲେଖ ରହିଛି । ଏଥିରୁ ଜଣାପଡୁଛି, ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ନାଟ୍ୟଶାସ୍ତ୍ରର ବର୍ତ୍ତମାନ ପାଠ ସ୍ଥିର ହୋଇସାରିଛି । ଯାଜ୍ଞବଲ୍କ୍ୟରେ ନାଟ୍ୟଶାସ୍ତ୍ରର ସାମଗ୍ରୀ ଗ୍ରହଣ କରାଯାଇଛି । ଗାଥାସପ୍ତଶତୀରେ ନାଟ୍ୟଶାସ୍ତ୍ରର ପୂର୍ବରଙ୍ଗ ସମ୍ପର୍କୀୟ ମତର ଚର୍ଚ୍ଚା ହୋଇଛି । ଏଣୁ ନାଟ୍ୟଶାସ୍ତ୍ରର ସମୟ ୨ୟ ଶତାବ୍ଦୀ ପର୍ଯ୍ୟନ୍ତ ଆସିଯାଉଛି ।

ନାଟ୍ୟଶାସ୍ତ୍ରରେ ଏନ୍ଦ୍ରଙ୍କ ବ୍ୟାକରଣ, ଯାସ୍କଙ୍କ ନିରୁକ୍ତର କିଛି ଉଦାହରଣ ଦେଖିବାକୁ ମିଳୁଛି । ଏଣୁ ନାଟ୍ୟଶାସ୍ତ୍ର ସେହି ସମୟର ବା ତାର କିଛି ପୂର୍ବର କୃତୀ । ନାଟ୍ୟଶାସ୍ତ୍ରରେ ବହୁ ସ୍ଥଳରେ ପ୍ରାଚୀନ ସୂତ୍ର ବା ଶ୍ଳୋକର ଉଦାହରଣ ମିଳୁଛି । ପ୍ରାଚୀନ କାଳରେ ବହୁ ଗ୍ରନ୍ଥ ସୂତ୍ର ପରିପାଟୀରେ ରଚିତ ହେଉଥିଲା । ନାଟ୍ୟଶାସ୍ତ୍ର ମଧ୍ୟ ଅନେକ ଜାଗାରେ ସୂତ୍ର ପରିପାଟୀରେ ଲିଖିତ ହେଇଛି । ଏଣୁ କେତେକ ଟୀକାକାର ଭରତଙ୍କ ରଚନାକୁ ସୂତ୍ର କହିଛନ୍ତି ଏବଂ ଭରତଙ୍କୁ ସୂତ୍ରକୃତ୍ ନାମ ଦେଇଛନ୍ତି । ନାଟ୍ୟବେଦ ଭରତଙ୍କୁ ସୂତ୍ରକୃତ୍ ନାମରେ ସ୍ମରଣ କରିଛନ୍ତି । ବିଭିନ୍ନ ପ୍ରମାଣକୁ ଆଧାରକରି ଅନୁମାନ କରାଯାଉଛି, ଭରତଙ୍କ ସମୟ କାଳିଦାସଙ୍କ ସମୟର ୨୦୦ ବର୍ଷ ପୂର୍ବର । କାଳିଦାସଙ୍କ ସମୟ ଯଦି ୪ର୍ଥ ଶତାବ୍ଦୀ ହୁଏ, ଭରତଙ୍କ ସମୟ ନିଶ୍ଚୟ ୨ୟ ଶତାବ୍ଦୀ ହେବ ।

ଦଶରୂପକରେ ଭରତଙ୍କୁ ଧନଞ୍ଜୟ ଆଦ୍ୟାଚାର୍ଯ୍ୟ ଭାବେ ବନ୍ଦନା କରିଛନ୍ତି । ରାଜଶେଖର 'କାବ୍ୟ ମୀମାଂସା'ରେ ରୂପକର ଆଚାର୍ଯ୍ୟ ଭାବେ ଭରତଙ୍କୁ ଗ୍ରହଣ କରିଛନ୍ତି । ନାଟ୍ୟଶାସ୍ତ୍ରଠାରୁ ଆହୁରି ପ୍ରାଚୀନ ଗ୍ରନ୍ଥ ହେଉଛି ଯାଜ୍ଞବଲ୍କ୍ୟ ସ୍ମୃତି । ଏଥିରେ ଭରତ, ଅଭିନେତା ଶବ୍ଦ ଦୁଇଟି ଗୋଟିଏ ଅର୍ଥରେ ପ୍ରୟୋଗ କରାଯାଇଛି । ଅନୁମାନ କରାଯାଇପାରେ ଅଭିନେତା ବା ଭରତ ନିଜ ପେସାକୁ ମହତ୍ତ୍ୱ ପ୍ରଦାନ କରିଛନ୍ତି । ଭରତ ନାମକ କଳ୍ପିତ ଋଷିଙ୍କ ନାମରେ ନାଟ୍ୟଶାସ୍ତ୍ର ରଚନା କରାଯାଇଛି । ଦ୍ୱିତୀୟ ଅନୁମାନ, ଭରତ କୌଣସି ବାସ୍ତବିକ ମୁନି ନାଟ୍ୟାଚାର୍ଯ୍ୟ ଅବଶ୍ୟ ଥିଲେ, ଯାହାଙ୍କ ନାମରେ ନାଟ୍ୟକଳାର ଜ୍ଞାତାକୁ ଭରତ କୁହାଗଲା । ପ୍ରଥମ ମତଟିକୁ ଡଃ କାନେ ସମର୍ଥନ କରନ୍ତି ।

## ନାଟ୍ୟଶାସ୍ତ୍ର

ନାଟ୍ୟଶାସ୍ତ୍ର ଭରତଙ୍କ ଦ୍ୱାରା ରଚିତ । ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ନାଟ୍ୟଶାସ୍ତ୍ରର ବାରହଜାର ଏବଂ ଛ' ହଜାର ସଂହିତାର ଉଲ୍ଲେଖ ମିଳୁଛି । ହେଲେ ଆଜିକାଲି ୧୨ହଜାର

ସଂହିତା ଉପଲବ୍ଧ ନୁହେଁ । କେବଳ ଛ'ହଜାର ସଂହିତା ମିଳୁଛି । ତାତ୍ପର୍ଯ୍ୟ ହେଉଛି, ଆଜିକାଲି ନାଟ୍ୟଶାସ୍ତ୍ରର ଛ' ହଜାର ଶ୍ଳୋକ ମିଳୁଛି । ଏବେ ନାଟ୍ୟଶାସ୍ତ୍ରର ଦୁଇଟି ସଂସ୍କରଣ ମିଳୁଛି ଯଥା - ୩୬ ଅଧ୍ୟାୟର, ୩୭ ଅଧ୍ୟାୟର । ଅଭିନବଗୁପ୍ତ ୩୬ ଅଧ୍ୟାୟକୁ ମାନନ୍ତି । ଉତ୍ତରରେ ମିଳୁଥିବା ନାଟ୍ୟଶାସ୍ତ୍ର ୩୭ ଅଧ୍ୟାୟର ଏବଂ ଦକ୍ଷିଣରେ ୩୬ ଏବଂ ୩୭ ଅଧ୍ୟାୟ ଉଭୟ ଗୋଟିଏ ଅଧ୍ୟାୟ ୩୬ ଅଧ୍ୟାୟରେ ସ୍ଥାନ ପାଇଛି । ବସ୍ତୁତଃ ୩୬ ଅଧ୍ୟାୟକୁ ଦୁଇଭାଗ କରାଯାଇ ୩୬ ଏବଂ ୩୭ ଅଧ୍ୟାୟ କରାଯାଇଛି ।

କେତେକ ମନେକରନ୍ତି ଅଭିନବଗୁପ୍ତ ୩୬ ଅଧ୍ୟାୟକୁ ଦୁଇଭାଗ କରିଛନ୍ତି । ନାଟ୍ୟଶାସ୍ତ୍ରରେ ୬ଷ୍ଠ ଏବଂ ୭ମ ଅଧ୍ୟାୟରେ ପର୍ଯ୍ୟାପ୍ତ ଗଦ୍ୟର ପ୍ରୟୋଗ ହୋଇଛି । ଏହି ଗ୍ରନ୍ଥରେ ସୂତ୍ର, ଭାଷ୍ୟ, ସଂଗ୍ରହ, କାରିକା, ନିରୁକ୍ତ ଆଦି ଅନେକ ଶୈଳୀ ଏବଂ ପଦ୍ଧତିର ପ୍ରୟୋଗ କରାଯାଇଛି । ନାଟ୍ୟଶାସ୍ତ୍ରର ଗଦ୍ୟରୁ ଜଣାଯାଏ, ଏହା ସୂତ୍ରଗ୍ରନ୍ଥ । ଭବଭୂତି ଏବଂ ଅଭିନବଗୁପ୍ତଙ୍କ ଉଲ୍ଲେଖ ଦ୍ୱାରା ଏହାର ପୁଷ୍ଟି ହୋଇଛି । ତେବେ ନାଟ୍ୟଶାସ୍ତ୍ରର ଗଦ୍ୟରେ ସୂତ୍ର ଏବଂ ଭାଷ୍ୟ ଦୁଇଟିଯାକ ରହିଛି । ଅଭିନବଗୁପ୍ତ ନାଟ୍ୟଶାସ୍ତ୍ରକୁ 'ଭରତସୂତ୍ର' ନାମ ଦେଇଛନ୍ତି ।

ଭରତ ତାଙ୍କ ପୂର୍ବର ଆଚାର୍ଯ୍ୟଙ୍କୁ ସ୍ଥଳବିଶେଷରେ ସମର୍ଥନ କରିଛନ୍ତି ପୁଣି କେତେକଙ୍କ ସହିତ ଅସମ୍ମତ ହୋଇଛନ୍ତି । ଯୋଜନା ବିଷୟ ପ୍ରତିପାଦନ ଆଦି ଦୃଷ୍ଟିକୋଣରୁ ଦେଖିଲେ ଜଣାଯାଏ, ନାଟ୍ୟଶାସ୍ତ୍ର ଏକ ବ୍ୟବସ୍ଥିତ, ସୁନିୟୋଜିତ ଏବଂ ସୁସଂପାଦିତ ଗ୍ରନ୍ଥ । ଗ୍ରନ୍ଥ ରଚନା କାଳରେ ଭରତ ତାଙ୍କ ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନଙ୍କ ମତକୁ ସମ୍ମାନ ପ୍ରଦର୍ଶନ କରିଛନ୍ତି । ପୁଣି କେତେକ କହନ୍ତି ଏହା ଭରତଙ୍କ ରଚନା ନୁହେଁ, ଏହା ତାଙ୍କର ଶିଷ୍ୟର ରଚନା । ମାତ୍ର ଅଭିନବଗୁପ୍ତ ଏ ମତର ଦୃଢ଼ ଖଣ୍ଡନ କରି ଏହା ଭରତଙ୍କର ବୋଲି ଦର୍ଶାଇଛନ୍ତି ।

ନାଟ୍ୟଶାସ୍ତ୍ରରେ ଧର୍ମ ଏବଂ ନୈତିକତା ପ୍ରମୁଖ ଭୂମିକା ଗ୍ରହଣ କରିଛି । ଧର୍ମ ହେଉଛି ଏହାର ଶକ୍ତି ବା ପ୍ରେରଣା । ଏହା ହେଉଛି ପଞ୍ଚମବେଦ ବା ସାର୍ବବର୍ଣ୍ଣିକ । ଏହାର ସଫଳ ପ୍ରୟୋଗରେ ଦୈବୀକୃପା ମିଳେ । ନାଟ୍ୟଶାସ୍ତ୍ରରେ ଭାରତୀୟ ଧର୍ମ ଏବଂ ଆଦର୍ଶର ସ୍ପଷ୍ଟ ପ୍ରମାଣ ମିଳେ । ନାଟ୍ୟଶାସ୍ତ୍ରରେ ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଭାରତୀୟ ସମାଜର ଗଠନ ଅନୁରୂପ ସାମାଜିକ ବ୍ୟବସ୍ଥା ପ୍ରଦତ୍ତ ହୋଇଛି । ପରବର୍ତ୍ତୀ କାଳରେ ନାଟ୍ୟଶାସ୍ତ୍ରକୁ ବହୁ ବ୍ୟାଖ୍ୟାକାର ଆଲୋଚନା କରିଛନ୍ତି । କେତେକ ଟୀକା ଆଜିକାଲି ମିଳୁ ନାହିଁ ଯଥା - ହର୍ଷକୃତ ବାର୍ତ୍ତିକ, ରାହୁଳକୃତ କାରିକା, ମାନୁଗୁପ୍ତ ଟୀକା, କୀର୍ତ୍ତିଧର ଟୀକା ଆଦି । ଆଜିକାଲି ନାଟ୍ୟଶାସ୍ତ୍ର ଉପରେ ଅଭିନୟ ଭାରତୀକୁ ଛାଡ଼ିଦେଲେ ଅନ୍ୟ ଟୀକା ବା ବ୍ୟାଖ୍ୟା ମିଳୁ ନାହିଁ । ତେବେ ତାଙ୍କ ପୂର୍ବରୁ ଭଟ୍ଟଲୋଲ୍ଲଟ, ଶ୍ରୀଶଂକୁକ, ଭଟ୍ଟନାୟକ ଆଦି ଟୀକା ରଚନା କରିଥିଲେ । ମମ୍ମଟଙ୍କ କାବ୍ୟପ୍ରକାଶରେ ଉଦଭଟ୍ଟ, ଲୋଲ୍ଲଟ, ଶଂକୁକ, ଭଟ୍ଟନାୟକ, ଅଭିନବଗୁପ୍ତ ଆଦି ୫ଜଣ ଟୀକାକାରଙ୍କ ନାମ ଉଲ୍ଲେଖ ଅଛି । ତେଣୁ ଅନୁମାନ କରାଯାଏ, ନାଟ୍ୟଶାସ୍ତ୍ରର ଅତି କମ୍‌ରେ ୫ଟି ଟୀକା ଲେଖାଯାଇଥିଲା ।

## ଏରିଷ୍ଟଟଲ ଓ ପୋଏଟିକ୍ସ

ନିଜର ସାହିତ୍ୟ, ସଂସ୍କୃତି ପାଇଁ ଆଜି ଯଦି ବିଶ୍ୱରେ କୌଣସି ରାଜ୍ୟ ସଗର୍ବେ ମଥାଟେକି ଚାହିଁଥାଏ, ସେଇଟି ହେଉଛି ଗ୍ରୀସ୍ । ଏଇ ଦେଶ ବିଶ୍ୱର ମହାମାନବମାନଙ୍କୁ ଜନ୍ମଦେଇ ନିଜକୁ ଧନ୍ୟ ମନେ କରିଛି । ଗ୍ରୀସ୍‌ର ଗୌରବ ହେଉଛି - ସକ୍ରେଟିସ୍, ଡିମସ୍ଥିନିସ୍, ପ୍ଲେଟୋ, ଏରିଷ୍ଟଟଲ୍, ହୋମର, ଇଉରିପିଡ଼ସ୍ ପ୍ରଭୃତି କବି ଦାର୍ଶନିକ । ୟୁରୋପୀୟ ଭୂଖଣ୍ଡକୁ ଆଜିଯାଏ ଯଦି କୌଣସି ଦେଶ ଆଲୋକ ଦେଖାଇ ଆସିଥାଏ, ତାହା ହେଉଛି ଗ୍ରୀସ୍ ।

ମହାମନୀଷୀ ଏରିଷ୍ଟଟଲ ଥ୍ରେସ୍‌ର ଅନ୍ତର୍ଗତ ଷ୍ଟାଗିରା ନଗରରେ ଖ୍ରୀ:ପୂ: ୩୮୪ରେ ଜନ୍ମଗ୍ରହଣ କରିଥିଲେ । ଏଇ ନଗରଟି ମ୍ୟାସିଡନ ରାଜ୍ୟରେ ଅବସ୍ଥିତ, ଯାହା ଏଥେନ୍ସ ନଗରୀଠାରୁ ଦୁଇଶହ ମାଇଲ ଉତ୍ତରକୁ । ଏରିଷ୍ଟଟଲଙ୍କ ପିତା ନିକୋମେକାସ୍ ମ୍ୟାସିଡୋନାର ରାଜା ଏବଂ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ପିତାମହ ଦ୍ୱିତୀୟ ଆମିନଟାସ୍‌ଙ୍କ ଗୃହ ଚିକିତ୍ସକ ଥିଲେ । ଏରିଷ୍ଟଟଲଙ୍କ କୈଶୋର ଏବଂ ଯୌବନ କାଳ ସମ୍ପର୍କରେ ନାନା କାହାଣୀ ଶୁଣିବାକୁ ମିଳେ । ଗୋଟିଏ କାହାଣୀ ମତରେ, ସେ ଉଚ୍ଛୃଙ୍ଖଳ ଥିଲେ । ପୈତୃକ ଧନ-ସମ୍ପତ୍ତି ବରବାଦ କରିଦେଲେ । ଅନାହାରରେ ରହିବା ପରେ ସେ ସୈନ୍ୟବିଭାଗରେ ଯୋଗ ଦେଇଥିଲେ । ପରେ ସେ ନିଜ ନଗରୀକୁ ଫେରିଆସି ଚିକିତ୍ସା ବ୍ୟବସାୟ ଆରମ୍ଭ କରିଥିଲେ । ବତିଶ ବର୍ଷ ବୟସରେ ଦର୍ଶନ ପଢ଼ିବା ପାଇଁ ସେ ପ୍ଲେଟୋଙ୍କ ପାଖକୁ ଏଥେନ୍ସ ଯାଇଥିଲେ । ଅନ୍ୟ ମତରେ, ସେ ୧୮ ବର୍ଷ ବୟସରେ ଏଥେନ୍ସ ଯାଇଥିଲେ ଏବଂ ପ୍ଲେଟୋଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେଠାରେ ସେ ଆଠବର୍ଷ ଅଧ୍ୟୟନ କରିଥିଲେ । ପ୍ଲେଟୋଙ୍କ ମୃତ୍ୟୁବେଳକୁ ସେ ତାଙ୍କ 'ଆକାଡେମୀ'ରେ ଏଥେନ୍ସରେ ଥିଲେ । ପ୍ଲେଟୋଙ୍କ ମୃତ୍ୟୁ ପରେ ପରେ ସେ ଦେଶ ଭ୍ରମଣରେ ବାହାରିଗଲେ । ସେ ହାରମିୟାସଙ୍କ ପାଖରେ ରହିଥିଲେ ଏବଂ ସେଠାରେ ତାଙ୍କର ଭଉଣୀକୁ ବିବାହ କରିଥିଲେ ।

ପରେ ପରେ ମ୍ୟାସିଡୋନାର ରାଜା ଫିଲିପ ତାଙ୍କୁ ଦେଶକୁ ଡାକି ଆଲେକ୍‌ଜାଣ୍ଡାରଙ୍କ ଶିକ୍ଷାଭାର ତାଙ୍କ ଉପରେ ଅର୍ପଣ କରିଥିଲେ । ତିନିବର୍ଷ ସେ ତାଙ୍କୁ ଶିକ୍ଷା ଦେଇଥିଲେ । ଖ୍ରୀ:ପୂ: ୩୩୫ ପର୍ଯ୍ୟନ୍ତ ଏରିଷ୍ଟଟଲ ମ୍ୟାସିଡୋନାରେ ରହିଥିଲେ ଏବଂ ପରେ ଏଥେନ୍ସ ଫେରିଥିଲେ । ସେଠାରେ ସେ ଖ୍ରୀ:ପୂ: ୩୨୩ ପର୍ଯ୍ୟନ୍ତ ରହିଥିଲେ । ଏଇ ବାରବର୍ଷ ମଧ୍ୟରେ ସେ ବିଦ୍ୟାପୀଠ ବସାଇଥିଲେ ଏବଂ ଗ୍ରନ୍ଥ ରଚନାରେ ମନୋନିବେଶ କରିଥିଲେ । ତାଙ୍କ ବିଦ୍ୟାପୀଠର ନାମ ଥିଲା 'ଲାଇ ସିଉମ୍' । ଏଠାରେ ସେ ଦର୍ଶନ, ବିଜ୍ଞାନ, ରାଜନୀତି ଆଦି ବିଷୟରେ ଚର୍ଚ୍ଚା କରୁଥିଲେ । କିନ୍ତୁ ଏଠାରେ ବେଶିଦିନ ରହିପାରି ନ ଥିଲେ । ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ଏଥେନ୍ସ ମ୍ୟାସିଡୋନାର ଆଧିପତ୍ୟକୁ ଅସ୍ୱୀକାର କରି ବିଦ୍ରୋହ ଘୋଷଣା କରିଥିଲା । ଏରିଷ୍ଟଟଲ ଏତେଦିନ ପର୍ଯ୍ୟନ୍ତ ଆଲେକଜାଣ୍ଡାରଙ୍କୁ ସମର୍ଥନ କରିଆସିଥିଲେ । ଏହା ପଛରେ ଥିଲା ତାଙ୍କର ରାଜନୈତିକ

ଦର୍ଶନ - ଅର୍ଥାତ୍ ଛୋଟ ଛୋଟ ନଗରରାଜ୍ୟର ବିଲୋପ ତଥା କେନ୍ଦ୍ରୀଭୂତ ଶାସନ - ଗୋଟିଏ ଗ୍ରୀସ୍‌ରାଷ୍ଟ୍ରର କଳ୍ପନା । ଏଥେନ୍‌ସବାସୀ ଏହି ପରିକଳ୍ପନାକୁ ଭଲ ମନରେ ଗ୍ରହଣ କରି ନ ଥିଲେ । ଆଲେକ୍‌ଜାଣ୍ଡାରଙ୍କୁ ଡରି ଏଥେନ୍‌ସବାସୀ ଏରିଷ୍ଟଟଲଙ୍କୁ କିଛି କହିପାରୁ ନ ଥିଲେ । କିନ୍ତୁ ତାଙ୍କ ମୃତ୍ୟୁ ପରେ ସବୁ ଆକ୍ରୋଶର ଶିକାର ହେଲେ ଏରିଷ୍ଟଟଲ । ଇଡାରମେଡନ ନାମକ ପ୍ରଧାନ ପୁରୋହିତ ଏରିଷ୍ଟଟଲଙ୍କ ବିରୋଧରେ ମହାଭିଯୋଗ ଆଣିଲେ । ସେ ଏଥେନ୍‌ସର ଯୁବକମାନଙ୍କୁ ବିଭ୍ରାନ୍ତ କରୁଛନ୍ତି ବୋଲି ଅଭିଯୋଗ ହେବାରୁ ତାଙ୍କୁ ଏଥେନ୍‌ସ ତ୍ୟାଗ କରିବାକୁ ପଡ଼ିଥିଲା । ଏରିଷ୍ଟଟଲ ଏଥେନ୍‌ସରୁ ଯାଇ ଚାଲକିସ୍‌ଠାରେ ପହଞ୍ଚିଥିଲେ ଏବଂ ସେଠାରେ ପୀଡ଼ିତ ହୋଇ ମୃତ୍ୟୁବରଣ କରିଥିଲେ । ପୁଣି ଶୁଣାଯାଏ, ଗଭୀର ନୈରାଶ୍ୟ ଯୋଗୁଁ ଏରିଷ୍ଟଟଲ ବିଷପାନ କରି ଆତ୍ମହତ୍ୟା କରିଥିଲେ । ସେ ଖ୍ରୀ:ପୂ: ୩୨୨ରେ ମୃତ୍ୟୁବରଣ କରିଥିଲେ ।

ପ୍ଲେଟୋଙ୍କ ମତରେ ଏରିଷ୍ଟଟଲ ଥିଲେ ତାଙ୍କ ଏକାଡେମୀର ନଉସ (Nous) ବା ମୂର୍ତ୍ତିମାନ୍ ମଣିଷ । ଏରିଷ୍ଟଟଲଙ୍କ ବାସଗୃହ ଥିଲା ଏକକ ପାଠକେନ୍ଦ୍ର (the house of the reader) । ଇଉରିପିଡ଼ସଙ୍କ ପରେ ଏରିଷ୍ଟଟଲ ଥିଲେ ଏକ ବିରାଟ ପୋଥିଶାଳା । ସେ ଏପରି ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ, ଯାହାଙ୍କୁ ପ୍ଲେଟୋ ଏକ 'ମୂର୍ତ୍ତିମାନ୍ ମେଧା' ବୋଲି କହିପାରିଥିଲେ । ଦାର୍ଶନିକ ଏବଂ ବୈଜ୍ଞାନିକ ସଂସ୍କାର ସେ ତାଙ୍କର ଡାକ୍ତର ପିତାଙ୍କଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିଲେ । ଶେଷଆଡ଼କୁ ପ୍ଲେଟୋ ଏବଂ ଏରିଷ୍ଟଟଲଙ୍କ ମତର ଅମେଳ ହୋଇଥିଲା । ତାଙ୍କ ପାଖରେ ଯଦିଓ ପ୍ଲେଟୋ ଥିଲେ 'ପ୍ରିୟ', କିନ୍ତୁ ସତ୍ୟ ଥିଲା 'ପ୍ରିୟତର' । ଉଭୟ ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଯୁକ୍ତିତର୍କ ଚରମ ସୀମାରେ ପହଞ୍ଚିଥିଲା । ଏରିଷ୍ଟଟଲଙ୍କ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ତାଙ୍କୁ ବିଜୟୀ କରାଉଥିଲା ।

କେହି କେହି ତାଙ୍କର ଗ୍ରନ୍ଥସଂଖ୍ୟାକୁ ଚାରିଶହ, ପୁଣି କେତେକ ଏକହଜାର ବୋଲି କହିଥାନ୍ତି । ତେବେ ସେ ଲଜିକ୍ ବିଷୟରେ, ବିଜ୍ଞାନ ବିଷୟରେ, ଦର୍ଶନ ବିଷୟରେ ଏବଂ ସାହିତ୍ୟ ବିଷୟରେ ନାନା ଗ୍ରନ୍ଥ ରଚନା କରିଥିଲେ । ସାହିତ୍ୟ ଗ୍ରନ୍ଥ ମଧ୍ୟରେ ରହିଛି - Rhetorics ଏବଂ Poetics । ଖ୍ରୀ:ପୂ: ୩୩୫ରୁ ଖ୍ରୀ:ପୂ: ୩୨୩ ମଧ୍ୟରେ ଏରିଷ୍ଟଟଲ ଅଧିକାଂଶ ଗ୍ରନ୍ଥ ରଚନା କରିଥିବା ଅନୁମାନ କରାଯାଏ । ତାଙ୍କ ଜୀବିତ ଅବସ୍ଥାରେ 'ଲଜିକ ଓ ରେଟୋରିକ' ଛଡ଼ା ଅନ୍ୟକୌଣସି ଗ୍ରନ୍ଥ ପ୍ରକାଶିତ ହୋଇଥିଲା କି ନାହିଁ ସନ୍ଦେହ । ବାରବର୍ଷ ମଧ୍ୟରେ କେବେ 'ପୋଏଟିକ୍‌ସ' ରଚିତ ହୋଇଥିବ, ତାଙ୍କ ମୃତ୍ୟୁ ପରେ 'ପୋଏଟିକ୍‌ସ'ର ଅବସ୍ଥା କ'ଣ ଥିଲା, ସେ ନେଇ ଠିକ୍ ତଥ୍ୟ କିଛି ଜଣାପଡ଼େନା । ଏହି ଗ୍ରନ୍ଥଟିକୁ ସେ ସଂଶୋଧନ ମଧ୍ୟ କରିବାକୁ ସୁଯୋଗ ପାଇ ନ ଥିଲେ । ତେବେ ଏଇ ଅସଂଶୋଧିତ ରୂପଟି ପଣ୍ଡିତମାନଙ୍କ ପାଖରେ ପହଞ୍ଚିଥିଲା ।

ପୋଏଟିକ୍‌ସର ପ୍ରଥମ ଅନୁବାଦ ସିରୀୟ ଭାଷାରେ ହୋଇଥିଲା । ସେଥିରୁ Abu-Baschar ଆରବୀ ଭାଷାରେ ଅନୁବାଦ କରିଥିଲେ ୯୩୫ ଖ୍ରୀଷ୍ଟାବ୍ଦରେ ।

୧୩ଶ ଶତାବ୍ଦୀରେ ଜର୍ମାନୀର ହେରମାନ ଲାଟିନ୍ ଭାଷାରେ ଅନୁବାଦ କଲେ । ୧୪ଶ ଶତାବ୍ଦୀରେ ସ୍ପେନ୍ ମାଣ୍ଟିନାସ୍ ଅନୁବାଦ କରିଥିଲେ । ୧୫୪୮ରେ ରବଟଲି ଟୀକାଭାଷ୍ୟ ସହିତ ଏହାର ଅନୁବାଦ ପ୍ରକାଶ କଲେ । ଇଟାଲୀ ଭାଷାରେ ଏହାକୁ ଅନୁବାଦ କଲେ ବର୍ଣ୍ଣାଡ଼ୋ ସେଗ୍ନି । ପରେ ପରେ ପୋଏଟିକ୍ସର ବହୁ ଅନୁବାଦ ପ୍ରକାଶିତ ହୋଇଛି ।

ସାହିତ୍ୟତତ୍ତ୍ୱ ବିଶେଷ କରି ନାଟ୍ୟତତ୍ତ୍ୱ ସମ୍ପର୍କରେ ଯେଉଁମାନେ ଆଲୋଚନା କରନ୍ତି, ସେମାନେ ଏରିଷ୍ଟଟଲଙ୍କ 'ପୋଏଟିକ୍ସ'କୁ ଛାଡ଼ିପାରିବେନି । ଟ୍ରାଜେଡ଼ି ବିଷୟରେ ଆଲୋଚନା କରିବାକୁ ହେଲେ ଏରିଷ୍ଟଟଲଙ୍କ ପୋଏଟିକ୍ସ ହେଉଛି ଏକ ଅମୂଲ୍ୟ ଗ୍ରନ୍ଥ । ପୋଏଟିକ୍ସରେ ବିଭିନ୍ନ ବିଷୟ ସନ୍ନିବେଶ ହୋଇଛି ଯଥା - ଅନୁକରଣ, ଅନୁକରଣର ବିଷୟବସ୍ତୁ, ଅନୁକରଣ ରୀତି, କାବ୍ୟର ଉତ୍ପତ୍ତି ଓ କ୍ରମବିକାଶ, ହାସ୍ୟୋଦ୍ଦୀପକ ଏବଂ ତାର ଲକ୍ଷଣ, ଟ୍ରାଜେଡ଼ିର ଲକ୍ଷଣ, ଏକକ, ନାୟକ ଐକ୍ୟ, ଘଟଣା ଐକ୍ୟ, ପରିସ୍ଥିତି ବିପର୍ଯ୍ୟାସ, ଅଭିଜ୍ଞାନ, ଚରିତ୍ର, ଭାବନା, ରଚନାଶୈଳୀ, ମହାକାବ୍ୟ ଇତ୍ୟାଦି । ସର୍ବମୋଟ୍ ୨୬ଟି ଅଂଶରେ ପୋଏଟିକ୍ସ ବିଭକ୍ତ ହୋଇଛି ।

## ନାଟକ ବିଚାର

ସାହିତ୍ୟର ବିଚାର ସହଜସାଧ୍ୟ ନୁହେଁ । ଏଠି ସହୃଦୟତା ବଡ଼କଥା । ତା' ନ ହେଲେ ସାହିତ୍ୟର ରସ ଆସ୍ୱାଦନ କରିବା କଷ୍ଟକର ବ୍ୟାପାର । ସମୀକ୍ଷକର ଦୃଷ୍ଟିଭଙ୍ଗୀ ସମ୍ପର୍କରେ The Making of Literature ଗ୍ରନ୍ଥରେ (P-377) R.A. Scott James କହନ୍ତି - "The critic must have some knowledge of that tract of life from which the creative writer starts. That is to say, he must have understanding of what we call life itself.". ସାହିତ୍ୟ ମଧ୍ୟରେ ନାଟକ ବିଚାର ଆହୁରି କଷ୍ଟସାଧ୍ୟ । ଏହା ଏକ ଯୌଥକଳା ବା ମିଶ୍ରକଳା । ଖାଲି ନାଟକଟି ଲେଖିଦେଲେ କାମ ସରିଯିବ ନାହିଁ, ଅଭିନୀତ ନ ହେଲା ପର୍ଯ୍ୟନ୍ତ ତାର ସଫଳତା ପ୍ରତିପାଦିତ ହେବ ନାହିଁ ।

ନାଟକର ସଫଳତା ପାଇଁ ଦାୟୀ ନାଟ୍ୟକାର, ପ୍ରଯୋଜକ, କଳାକାର ଏବଂ ଦର୍ଶକ । ନାଟକ ହେଉଛି ମାନବ ଜୀବନର କୌତୂହଳମୟ ଆକର୍ଷଣୀୟ ଦୃଶ୍ୟରୂପ । ନାଟକଟିଏ ପାଠକଲେ ତାହା ମଣିଷର ଚିତ୍ତବୃତ୍ତିକୁ କିଛିଟା ତରଙ୍ଗାୟିତ କରିଥାଏ । କିନ୍ତୁ ତାହା ଯେତେବେଳେ ରଙ୍ଗମଞ୍ଚରେ ଅଭିନୀତ ହୁଏ, ତାର ମୂଲ୍ୟାୟନ ଅଲଗା ପ୍ରକାରର ହୋଇଥାଏ । ନାଟକର ତ୍ରୁଟିବିଚ୍ୟୁତି ରଙ୍ଗମଞ୍ଚରେ ଧରା ପଡ଼ିଯାଏ । ପଢ଼ିକରି ସମାଲୋଚନା କରିବା ଆଉ ଦେଖିକରି ସମାଲୋଚନା କରିବା ଭିତରେ ଅନେକ ଫରକ ରହିଛି । ନାଟକଟି ସବୁ ସମୟରେ ଅଭିନୟର ଅପେକ୍ଷା ରଖିଥାଏ, ଏ କଥା ମନେରଖି ଆଲୋଚନା କରିବାକୁ ହେବ । ଏଣୁ ସମୀକ୍ଷକର ଅଭିନୟ ସମ୍ପର୍କରେ ଅଭିଜ୍ଞତା ଥିବା ଆବଶ୍ୟକ । ତାଙ୍କର ରଙ୍ଗମଞ୍ଚ ସମ୍ପର୍କରେ ମଧ୍ୟ ଜ୍ଞାନ ଥିବା ଦରକାର । ଏଣୁ ନାଟକଟିକୁ ବିଚାର କଲାବେଳେ, ତତ୍କାଳୀନ ରଙ୍ଗମଞ୍ଚ ସମ୍ପର୍କରେ ସମୀକ୍ଷକଙ୍କର ସ୍ପଷ୍ଟ ଧାରଣା ରହିବା ଆବଶ୍ୟକ ।

ଆଜିକାଲି ନାଟକର ନାନାବିଧ ରୂପ ଦୃଷ୍ଟିଗୋଚର ହୁଏ । ଅନେକ ରୂପ ମଧ୍ୟରେ ପାରସ୍ପରିକ ସାମଞ୍ଜସ୍ୟ ଦେଖାଯାଏ । ଏଭଳି କ୍ଷେତ୍ରରେ ସମାଲୋଚକ ବିଚାର କରିବା ଦିଗରେ ଅସୁବିଧାର ସମ୍ମୁଖୀନ ହୁଏ । କ୍ଲାସିକ୍ ଏବଂ ରୋମାଣ୍ଟିକ ନାଟକକୁ ବିଚାର କଲାବେଳେ ସମାଲୋଚକକୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । କୌଣସି ନାଟକକୁ ଭଲମନ୍ଦ କହିବା ପୂର୍ବରୁ ତା' ବିଷୟରେ ଗଭୀର ଭାବରେ ଅନୁଧ୍ୟାନ କରିବାକୁ ହେବ । ନାନା ପ୍ରକାର 'ଇଜମ୍' ଦ୍ୱାରା ନାଟ୍ୟସାହିତ୍ୟ ଋଦ୍ଧିମନ୍ତ ହୋଇଥିବାରୁ, ତାର ବିଚାର ମଧ୍ୟ କଷ୍ଟସାଧ୍ୟ । ନାଟ୍ୟ ଦିଗନ୍ତରେ ସିମ୍ବଲିଜିମ୍, ଇମ୍ପ୍ରେସନିଜିମ୍, ଏକ୍ସପ୍ରେସନିଜିମ୍, ରିୟଲିଜିମ୍, ସର-ରିୟଲିଜିମ୍, ଆଇଡିଆଲିଜିମ୍ ଆଦି ନାନା ବାଦର ପ୍ରୟୋଗ ଫଳରେ ନାଟ୍ୟ ବିଚାରରେ କୌଣସି ଏକ ଆଦର୍ଶକୁ ଅନ୍ୱେଷଣ କରିବା କଷ୍ଟକର ବ୍ୟାପାର । ଖାଲି ସେତିକି ନୁହେଁ, ଟ୍ରାଜେଡ଼ି, କମେଡ଼ି, ମେଲୋଡ୍ରାମା, ଫାର୍ସ, ଟ୍ରାଜିକମେଡ଼ି ଏସବୁର ସଂଜ୍ଞା ଏବଂ ସ୍ୱରୂପ ନେଇ ନାନା ପ୍ରକାର ମତ ଦେଖାଯାଏ ।

ଏଣୁ ନାଟ୍ୟ ସମାଲୋଚକଠାରୁ ଅନେକ କିଛି ଆଶା କରାଯାଏ । ନାଟକ ଦୃଶ୍ୟକାବ୍ୟ ହୋଇଥିବାରୁ ତାହାର ଅଭିନୟ ଦିଗ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ତେବେ ସବୁ ସମୟରେ ମଞ୍ଚ ସଫଳ ନାଟକକୁ ଶ୍ରେଷ୍ଠ ବୋଲି କୁହାଯାଇପାରିବନି । ଅନେକ ନିମ୍ନସ୍ତରର ନାଟକ ଅଭିନେତାର ବ୍ୟକ୍ତିଗତ କଳା, ଆଲୋକ ସଂପାତର ବୈଚିତ୍ର୍ୟ ଯୋଗୁଁ ଦର୍ଶକମାନଙ୍କର ଆଦୃତି ଲାଭ କରିଥାଏ । ଏଠି ମଞ୍ଚ ସଫଳତା କାମ ଦେଇ ନ ଥାଏ । ତେବେ ନାଟ୍ୟ ସମାଲୋଚକଙ୍କର ମଞ୍ଚ ସମ୍ପର୍କରେ ଯଥେଷ୍ଟ ଜ୍ଞାନ ଥିବା ଆବଶ୍ୟକ । ଏହାର କାବ୍ୟତ୍ୱ ସହିତ ନାଟକୀୟତା ମଧ୍ୟ ବିଚାର୍ଯ୍ୟ । ଏ ସମ୍ପର୍କରେ କୁହାଯାଇଛି - "A dramatic work must always be regarded from a double point of view, how far it is poetical and how far it is theatrical." ଅଧ୍ୟାପକ ସ୍ଲେଗେଲ ଅଭିନୟ ଏବଂ କାବ୍ୟତ୍ୱ ଏ ଦୁଇ ଦିଗରୁ ନାଟକକୁ ବିଚାର କରିଛନ୍ତି ।

ଅନେକ ନାଟକ ଯେକି କାବ୍ୟଗୁଣରେ ଗରୀୟାନ୍ ଅଥଚ ମଞ୍ଚ ଦୃଷ୍ଟିରୁ ଅସଫଳ, ତାକୁ 'ପାଠ୍ୟନାଟକ' ରୂପେ ଗଣାଯାଇପାରେ, କିନ୍ତୁ ଶ୍ରେଷ୍ଠ ନାଟକ କୁହାଯାଇପାରିବ ନାହିଁ । ନାଟକର ଅଭିନୟ ଯଦି ଲୋକଙ୍କୁ ଆକୃଷ୍ଟ କରି ନ ପାରେ, ତେବେ ଧରିନେବାକୁ ହେବ ଯେ ଅଭିନୟ ଦିଗଟି ଏଠାରେ ଅବହେଳିତ । ଯଦି କୌଣସି ନାଟକ ମଞ୍ଚ ସଫଳ ହେଲେ ମଧ୍ୟ, ଏହାର କାବ୍ୟମୂଲ୍ୟ ଉପେକ୍ଷିତ, ସେ ନାଟକକୁ ମଧ୍ୟ ସାର୍ଥକ ନାଟକ କୁହାଯାଇପାରିବ ନାହିଁ । ଭାବର ରସ ପରିଣତି ଯଦି ସାର୍ଥକତା ଲାଭ କରେ, ତେବେ ତାର ସାହିତ୍ୟିକ ସୌନ୍ଦର୍ଯ୍ୟ ଫୁଟି ଉଠିଥାଏ । ଭାବର ରସରୂପକୁ ଅଧ୍ୟାପକ ସ୍ଲେଗେଲ କାବ୍ୟଲକ୍ଷଣ ଭାବେ ଗ୍ରହଣ କରିନେଇଛନ୍ତି ।

ନାନା ପରିସ୍ଥିତି ମଧ୍ୟ ଦେଇ ନାଟକର ଭାଗ୍ୟ ନିର୍ଣ୍ଣୀତ ହୋଇଥାଏ । ବେଳେବେଳେ ପ୍ରଯୋଜକ ନାଟକଟିକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ବଦଳାଇ ଦେଇଥାଏ । ପୁଣି

ବେଳେବେଳେ ରଙ୍ଗମଞ୍ଚର କଳାକୌଶଳ ଠିକ୍ ଭାବରେ ନାଟକରେ ପ୍ରଭାବ ବିସ୍ତାର କରିପାରେନା । ଏଣୁ ନାଟ୍ୟସମାଲୋଚକ ସବୁଦିଗ ପ୍ରତି ସଚେତନ ହେବା ଆବଶ୍ୟକ । ନାଟ୍ୟଶାଳାଠାରୁ ଆରମ୍ଭ କରି ନାଟ୍ୟକଳା ପର୍ଯ୍ୟନ୍ତ ସବୁ ବିଷୟରେ ତାଙ୍କର ଜ୍ଞାନ ରହିବା ଉଚିତ । ପ୍ରତ୍ୟେକ୍ ନାଟକର କିଛି root idea ବା ଭାବବୀଜ ଥାଏ ଭରତ ଏହାକୁ ନାଟକର ସ୍ଥାୟୀଭାବ ରୂପେ ଗ୍ରହଣ କଲାବେଳେ କେହି କେହି ଏହାକୁ theme ଭାବେ ପରିକଳ୍ପନା କରିଛନ୍ତି । ଭାବବୀଜ ବା ପ୍ରତିପାଦ୍ୟ ବିଷୟ ଠିକଣା ହେଲାପରେ, ନାଟ୍ୟସମାଲୋଚକ ବୃତ୍ତ ଦିଗକୁ ଅଗ୍ରସର ହେବ, ଯାହାକୁ ଆଧାର କରି ଘଟଣା, ଚରିତ୍ର, ସଂଳାପ ବିକଶିତ ହୋଇଥାଏ । ବୃତ୍ତ ବିଚାର ସମୟରେ ଘଟଣାର ଅଗ୍ରଗତି ଓ ଜଟିଳତା, ନାଟ୍ୟଘଟଣାର ବୀଜବପନ, ଘଟଣାର ନିମ୍ନମୁଖୀ ଗତି, ଉପସଂହାର କିପରି କରାଯାଇଛି, ନାଟକଟି କେତୋଟି ଅଙ୍କ ଦୃଶ୍ୟରେ ବିଭକ୍ତ ହୋଇଛି, ତାହା ଯୁକ୍ତିସଙ୍ଗତ ହୋଇଛି କି ନାହିଁ, ଏସବୁ ଦେଖିବାକୁ ହେବ । ନାଟ୍ୟଘଟଣା ସରଳ କି ଜଟିଳ, ଘଟଣାବଳୀ ପାରସ୍ପରିକ କାର୍ଯ୍ୟକାରଣ ସୂତ୍ରରେ ଗ୍ରଥିତ ହୋଇଛି କି ନାହିଁ, ଏସବୁ ଦିଗ ପ୍ରତି ଧ୍ୟାନ ଦେବାକୁ ହେବ ।

ନାଟ୍ୟବୃତ୍ତର ଘଟଣାଟିର ଉତ୍ସ କିଏ, ତାକୁ ସ୍ଥିର କରିବାକୁ ହେବ । ଉତ୍ସକୁ ଆଧାର କରି ନାଟକର ନାମକରଣ ଇତିହାସ, ପୁରାଣ ବା ସାମାଜିକ ସ୍ତରରୁ ହୋଇଥାଏ । ଖାଲି ଉତ୍ସ ଦେଖିଲେ ହେବ ନାହିଁ, ତାହାର ଆତ୍ମା ବା ଆଦର୍ଶ ରକ୍ଷିତ ହୋଇଛି କି ନାହିଁ, ଦେଖିବାକୁ ହେବ । ନାଟକର ବିଭିନ୍ନ ଉପାଦାନଗୁଡ଼ିକୁ ବିଶ୍ଳେଷଣ କରିବାକୁ ହେବ । ଚରିତ୍ରର ଯୁକ୍ତିଯୁକ୍ତତା, ସଂଳାପର ଯଥାର୍ଥତା ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ନାଟକରେ ଦ୍ୱନ୍ଦ୍ୱ, ସଂଘାତ ରକ୍ଷିତ ହୋଇଛି କି ନାହିଁ, ଏହା ମଧ୍ୟ ବିଚାର୍ଯ୍ୟ । ସଙ୍ଗୀତ ଏବଂ ଆବହସଙ୍ଗୀତ ଉପଯୁକ୍ତ ବିନିଯୋଗ ହୋଇଛି କି ନାହିଁ, ଆଲୋକ ଏବଂ ମଞ୍ଚସଜ୍ଜା କେତେଦୂର ସଫଳ ହୋଇଛି, ଏସବୁ ଦିଗ ପ୍ରତି ସଚେତନ ହେବା ସମୀକ୍ଷକର କର୍ତ୍ତବ୍ୟ । ଉପରେ ଯେତେଗୁଡ଼ିଏ ଦିଗ ଉପରେ ଆଲୋଚନା କରାଗଲା, ସେସବୁର ଉପଯୋଗିତା ଏବଂ ଅଭିନୟ ଦିଗରୁ ସେସବୁର ପ୍ରୟୋଜନୀୟତା ଏବଂ ସାର୍ଥକତା ପ୍ରତି ଧ୍ୟାନ ଦେବା ନାଟ୍ୟ ସମୀକ୍ଷକର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ ।

## ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟ୍ୟତତ୍ତ୍ୱର ତୁଳନା

ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦିଗନ୍ତରେ ଅନୁସୃତ ନାଟ୍ୟତତ୍ତ୍ୱରେ କେତେକ ଉପାଦାନରେ ସାମଞ୍ଜସ୍ୟ ଥିଲାବେଳେ, ଅନ୍ୟ କେତେକରେ ଫରକ ଦେଖାଯାଏ । ପାଶ୍ଚାତ୍ୟ ନାଟ୍ୟତତ୍ତ୍ୱ ଆରିଷ୍ଟଟଲ, ଜନ ଡ୍ରାଇଡ଼େନ, ଏ.ସି. ବ୍ରାଡ଼ଲି, ଜି.ଫ୍ରେତାଗ, ବର୍ଣ୍ଣାଡ଼'ଶ ଆଦିଙ୍କ ମତାମତକୁ ନେଇ ସମୃଦ୍ଧ ହୋଇଥିବାବେଳେ, ପ୍ରାଚ୍ୟ ଦିଗନ୍ତରେ ଆମେ ଦେଖୁ, ଭରତ, ନନ୍ଦୀକେଶ୍ୱର, ଅଭିନବଗୁପ୍ତ ପ୍ରମୁଖ ନାଟ୍ୟବିଦ୍‌ମାନଙ୍କୁ । ଏମାନଙ୍କ ପରେ ମଧ୍ୟ ଉଭୟ ଦିଗନ୍ତରେ ବହୁ ଆଲୋଚକ ସ୍ଥାନ ପାଇଛନ୍ତି ଏବଂ ସେମାନଙ୍କ ମନ୍ତବ୍ୟରେ ନାଟ୍ୟତତ୍ତ୍ୱର

ପରିସରକୁ ସମୃଦ୍ଧ କରିଛନ୍ତି । ଭରତ ଓ ଆରିଷ୍ଟଟଲଙ୍କ ପ୍ରଦର୍ଶିତ ମାର୍ଗର ବିକାଶ ସାଧିତ ହୋଇଛି ସେମାନଙ୍କ ସମସାମୟିକ ଆଚାର୍ଯ୍ୟମାନଙ୍କଦ୍ୱାରା । ଆରିଷ୍ଟଟଲ ନାଟକର ଛ'ଟି ଉପାଦାନକୁ ସ୍ୱୀକାର କରିଛନ୍ତି ଯଥା - ବୃତ୍ତ ବା କଥାବସ୍ତୁ, ଚରିତ୍ର, ଚିନ୍ତା, ଭାଷା ବା ସଂଳାପ, ସଙ୍ଗୀତ ଏବଂ ଦୃଶ୍ୟରୂପ ।

**ବୃତ୍ତ** - ଏହାକୁ କଥାବସ୍ତୁ ବା ପ୍ଲଟ କୁହାଯାଏ । ବୃତ୍ତର ଅର୍ଥ ହେଉଛି ଅନେକ ଘଟଣାର ପାରସ୍ପରିକ ସଂଯୋଗ ସୂତ୍ରରେ ଗ୍ରଥିତ ଏକ ଆଦର୍ଶ ରୂପ । ଜୀବନର ବିବିଧ ଘଟଣାକୁ ଗୋଟିଏ ମାଳାରେ ଗୁନ୍ଥି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପଥରେ ପହଞ୍ଚାଇବା ହେଉଛି ବୃତ୍ତ । ଭରତ ନାଟ୍ୟଶାସ୍ତ୍ରରେ ପ୍ଲଟ ବା ବୃତ୍ତକୁ କହିଛନ୍ତି 'ଇତିବୃତ୍ତ' । ବିଶ୍ୱନାଥ, ଧନଞ୍ଜୟ ବୃତ୍ତକୁ 'ବସ୍ତୁ' ଭାବେ ଗ୍ରହଣ କରିଛନ୍ତି । ପ୍ରାଚ୍ୟ ଆଳଙ୍କାରିକଗଣ 'ବୃତ୍ତ'ରେ ଅନୁଷ୍ଠିତ ଗତି ବା ପ୍ରକ୍ରିୟାକୁ ୫ଟି ଅବସ୍ଥା ଭିତର ଦେଇ ଗ୍ରହଣ କରିଛନ୍ତି ଯଥା - ପ୍ରାରମ୍ଭ, ପ୍ରଯତ୍ନ, ପ୍ରାପ୍ତ୍ୟାଶା, ନିୟତାପ୍ତି ଏବଂ ଫଳାଗମ । କଥାବସ୍ତୁରେ ନାୟକର ପ୍ରୟୋଜନସିଦ୍ଧ ବା ଫଳଲାଭର କାରଣସ୍ୱରୂପ ଭରତ ୫ଟି ଅର୍ଥପ୍ରକୃତିର ନିରୂପଣ କରିଛନ୍ତି ଯଥା - ବୀଜ, ବିନ୍ଦୁ, ପତାକା, ପ୍ରକରୀ ଓ କାର୍ଯ୍ୟ । ନାଟ୍ୟଶରୀର ବା ଇତିବୃତ୍ତକୁ ୫ଟି ଅବସ୍ଥାରେ ବିଭକ୍ତ କଲାପରି ଏଇ ଅବସ୍ଥା ବା ପର୍ଯ୍ୟାୟଭିତରୁ ୫ଟି ସନ୍ଧି ଉଦ୍ଭବ ହୋଇଛି ଯଥା - ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଷ ଓ ନିର୍ବହଣ । 'The Art of Poetry' ଗ୍ରନ୍ଥରେ ଆରିଷ୍ଟଟଲ ବୃତ୍ତ ଓ ତାର ବିଭିନ୍ନ ଦିଗ ସମ୍ପର୍କରେ ଆଲୋଚନା କରିଛନ୍ତି । ତାଙ୍କ ମତରେ ନାଟକର ଆତ୍ମା ହେଲା ବୃତ୍ତ, ଯାହାର ୩ଟି ଅଂଶ ରହିଛି ଯଥା - ଆଦି, ମଧ୍ୟ ଏବଂ ଅନ୍ତ । ଜନ ଡ୍ରାଇଡେନ An Essay of Dramatic Poetryରେ ନାଟ୍ୟବୃତ୍ତକୁ ଚାରିଭାଗରେ ବିଭକ୍ତ କରିଛନ୍ତି ; ଯଥା - ପ୍ରୋଟୋସିସ୍ (ପ୍ରବେଶ), ଏପିଟାସିସ୍ (କ୍ରିୟା), କାଟାସ୍‌ଟାସିସ୍ (ପୂର୍ଣ୍ଣ ଅଗ୍ରଗତି), କାଟାସ୍‌ଟ୍ରଫି । ବ୍ରାଡ଼ଲି ଟ୍ରାଜେଡ଼ିର ପ୍ଲଟ ବା ବୃତ୍ତକୁ ତିନିଟି ଶ୍ରେଣୀରେ ବିଭକ୍ତ କରିଛନ୍ତି ; ଯଥା - ଏକ୍ସପୋଜିସନ (ଘଟଣାର ଆବରଣ ଉନ୍ମୋଚନ), ଡେଫିନାଇଟ ବିଗିନିଙ୍ଗ (ସୁନିର୍ଦ୍ଦିଷ୍ଟ ସୂଚନା) ଏବଂ କାଟାସ୍‌ଟ୍ରଫି (ପରିଣାମ) । ଜର୍ଜ ବର୍ଣ୍ଣାଡ଼'ଶ The Technical Novelty in Ibsen's Playsରେ ନାଟ୍ୟବୃତ୍ତକୁ ତିନୋଟି ଭାଗରେ ବିଭକ୍ତ କରିଛନ୍ତି ଯଥା - ସୂଚନା ବା ଏକ୍ସପୋଜିସନ, ପରିସ୍ଥିତି ବା ସିଚୁଏସନ, ଆଲୋଚନା ବା ଡିସ୍‌କସନ । ଜି. ଫ୍ରେଡାଗ ତାଙ୍କର Technique of the Drama ଗ୍ରନ୍ଥରେ ନାଟ୍ୟଘଟଣାକୁ ୫ଟି ଭାଗରେ ବିଭକ୍ତ କରିଛନ୍ତି ; ଯଥା - ପ୍ରସ୍ତାବନା ବା ଇନ୍‌ଟ୍ରୋଡକ୍‌ସନ, ଆରୋହ ବା ରାଇଜ୍, ଚୂଡ଼ାନ୍ତପର୍ବ ବା କ୍ଲାଇମାକ୍‌ସ, ଅବରୋହ ପର୍ବ ବା ରିଟର୍ଣ୍ଣ/ଫଲ, ଏବଂ ପରିଣାମ ପର୍ବ ବା କାଟାସ୍‌ଟ୍ରଫି ।

ବୃତ୍ତ ସହିତ ଉପବୃତ୍ତ ବା ଉପକାହାଣୀର ପ୍ରୟୋଗ ମଧ୍ୟ ନାଟ୍ୟସାହିତ୍ୟରେ ଦେଖାଯାଏ । ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ନାଟ୍ୟବୃତ୍ତରେ ଉପବୃତ୍ତ ଯୁକ୍ତ ହେବାର ଐତିହ୍ୟ ଅତ୍ୟନ୍ତ ପ୍ରାଚୀନ ।

**ଐକ୍ୟନୀତି** - ଆରିଷ୍ଟଟଲ ନାଟକର ଐକ୍ୟନୀତି ସମ୍ପର୍କରେ ଗଭୀର ଭାବରେ ଆଲୋଚନା କରିଛନ୍ତି । ତାଙ୍କ ମତରେ ନାଟକରେ ତିନିପ୍ରକାର ଐକ୍ୟ ଦେଖାଯାଏ ; ଯଥା - ଘଟଣାଗତ ଐକ୍ୟ, କାଳଗତ ଐକ୍ୟ ଏବଂ ସ୍ଥାନଗତ ଐକ୍ୟ । ଘଟଣାଗତ ଐକ୍ୟ ବିଷୟରେ ଆରିଷ୍ଟଟଲ ବିଶଦ ଭାବେ ଆଲୋଚନା କରିଥିବାବେଳେ, କାଳଗତ ଐକ୍ୟ ସମ୍ପର୍କରେ ସଂକ୍ଷିପ୍ତ ଭାବେ ସୂଚନା ଦେଇଛନ୍ତି । ମାତ୍ର ସ୍ଥାନଗତ ଐକ୍ୟ ବିଷୟରେ ପ୍ରାୟ କିଛି କହି ନାହାନ୍ତି । ଗୋଟିଏ ମାତ୍ର ସମଗ୍ର ଘଟଣା ବହୁ ଘଟଣାଂଶକୁ ନେଇ ଏଭଳି ଐକ୍ୟ ସୂତ୍ରରେ ଗ୍ରଥିତ ହେବ ଯେ କୌଣସି ଗୋଟିଏ ଅଂଶ ସମଗ୍ର ଘଟଣାରୁ କଟିଗଲେ, the whole will be disjointed and disturbed ଅର୍ଥାତ୍ ପ୍ରତ୍ୟେକଟି ଘଟଣାଂଶ କାର୍ଯ୍ୟକାରଣ ସୂତ୍ରରେ ଗ୍ରଥିତ ହୋଇ ଆଦି ମଧ୍ୟ ଅନ୍ତଯୁକ୍ତ ହୋଇ ଏକ ସମ୍ପୂର୍ଣ୍ଣ ଘଟଣାକୁ ରୂପ ଦେବ । କାଳଗତ ଐକ୍ୟ ସମ୍ପର୍କରେ ଆରିଷ୍ଟଟଲଙ୍କ ମତ ହେଲା, ୨୪ ଘଣ୍ଟା ବା ସେଥିରୁ ଅଳ୍ପ କିଛି ବେଶି ସମୟର ଘଟଣାକୁ ନାଟକରେ ଉପସ୍ଥାପନ କରିବାକୁ ହେବ । ସ୍ଥାନଗତ ଐକ୍ୟ ସମ୍ପର୍କରେ ତାଙ୍କର ଆଭାସ ହେଲା, ଆୟତନର ସଂକ୍ଷିପ୍ତ ଏବଂ ସଙ୍କୀର୍ଣ୍ଣତର ସୀମା ମଧ୍ୟରେ ନାଟ୍ୟଘଟଣା ଗତି କରିବ ।

ବହୁ ଘଟଣାଦ୍ୱାରା ନାଟ୍ୟବୃତ୍ତକୁ ଭାରାକ୍ରାନ୍ତ କରିବାକୁ ପ୍ରାଚ୍ୟ ନାଟ୍ୟବିତ୍‌ଗଣ ଚାହି ନାହାନ୍ତି । ଭରତଙ୍କ ମତରେ ଯେଉଁଠି ବୃତ୍ତର ବହୁ ଘଟଣା ଥାଏ, ସେସବୁର ଉପସ୍ଥାପନାରେ ରସହାନି ଘଟିବାର ସମ୍ଭାବନା ଥାଏ । ସାହିତ୍ୟ ଦର୍ପଣକାର ବିଶ୍ୱନାଥ ଘଟଣାଗତ ଐକ୍ୟ ସମ୍ପର୍କରେ ସଚେତନ ଥିଲେ । ଭାରତୀୟ ଆଳଙ୍କାରିକଗଣ ଭାବଗତ ଐକ୍ୟ ବା Unity of impression ରକ୍ଷା ଦିଗରେ ବିଶେଷ ଦୃଷ୍ଟି ଦେଇଥିଲେ । କାଳଗତ ଐକ୍ୟ ସମ୍ପର୍କରେ ଭରତ ଏବଂ ବିଶ୍ୱନାଥ କିଛିଟା ନିର୍ଦ୍ଦେଶ ଦେଇଛନ୍ତି । ଭରତଙ୍କ ମତରେ ପ୍ରତ୍ୟେକ ଅଙ୍କରେ ଗୋଟିଏ ଦିନର କାର୍ଯ୍ୟ ହିଁ ଉପସ୍ଥାପିତ ହେବ । ଯଦି ଗୋଟିଏ ଅଙ୍କରେ ତା' ସମ୍ଭବ ନ ହୁଏ, ତେବେ ପ୍ରବେଶକର ସାହାଯ୍ୟ ନେବାକୁ ହେବ । ବିଶ୍ୱନାଥଙ୍କ ମତରେ ଗୋଟିଏ ଅଙ୍କରେ ଅନେକ ଦିନର ଘଟଣା ସ୍ଥାନପାଇବା ଉଚିତ ନୁହେଁ । ଭରତଙ୍କ ମତରେ, ଗୋଟିଏ ଅଙ୍କରେ ଗୋଟିଏ ଦିନର ଘଟଣା ସ୍ଥାନ ପାଇପାରେ । ଦୁଇଅଙ୍କର ବ୍ୟବଧାନ ଏକମାସରୁ ଅଧିକ ହେବ ନାହିଁ । ବର୍ଷକରୁ ଅଧିକ ବ୍ୟବଧାନ ପୂରାପୂରି ନିଷିଦ୍ଧ । ସମଗ୍ର ନାଟକଟିରେ କେତେ ବର୍ଷର ଘଟଣା ରହିବ, ସେ ବିଷୟରେ କିଛି ସୂଚନା ନାହିଁ । ସ୍ଥାନଗତ ଐକ୍ୟ ସମ୍ପର୍କରେ ମଧ୍ୟ କୌଣସି ସୂଚନା ମିଳେନା । ସଂସ୍କୃତ ନାଟକର ଅଙ୍କ ମଧ୍ୟରେ କେଉଁଠି ସ୍ଥାନଗତ ଐକ୍ୟ ରହିଛି ତ ପୁଣି କେଉଁଠି ରହି ନାହିଁ ।

**ଚରିତ୍ର** - ନାଟକର ପ୍ରାଣ ହେଉଛି ଚରିତ୍ର । ଘଟଣା ବା ତାର ଅନ୍ତର୍ଗତ ଭାବକୁ ଆମ ସମ୍ମୁଖରେ ଜୀବନ୍ତ ଭାବେ ଉପସ୍ଥାପନ କରେ ଚରିତ୍ର । ଆରିଷ୍ଟଟଲଙ୍କ ମତରେ, ଚରିତ୍ର ହେଉଛି ଏପରି ଏକ ଧର୍ମ, ଯାହା ପାଇଁ ମଣିଷ ଉପରେ ଆମେ କେତେକ ଗୁଣ

ଆରୋପ କରିଥାଉ - By character I mean that in virtue of which we ascribe certain qualities to the agents. ତାଙ୍କ ମତରେ ଚରିତ୍ରଟି ଭଲ (good) ହେବା ଦରକାର । ତାର ନୈତିକ ଅଭିପ୍ରାୟ ପ୍ରକାଶ ପାଇବା ଉଚିତ । ଚରିତ୍ର ଯଥାଯଥ (Propriety) ହେବା ଉଚିତ । ଅର୍ଥାତ୍ ନାରୀ କୋମଳାଙ୍ଗୀ, ରାଜା ସାହସୀ ହେବା ଦରକାର । ଚରିତ୍ର ପୁଣି ବାସ୍ତବ (true to life) ହେବା ଦରକାର । ଚରିତ୍ର ମଧ୍ୟରେ ସଙ୍ଗତି (Consistency) ରହିବା ଦରକାର । ପୁନଶ୍ଚ ଚରିତ୍ରକୁ ପ୍ରୟୋଜନୀୟ ଏବଂ ସମ୍ଭାବ୍ୟ (necessary and probable) କରି ଗଢ଼ି ତୋଳିବାକୁ ହେବ । W.H. Hudson ଚରିତ୍ର ସମ୍ପର୍କରେ କହନ୍ତି - "Characterisation is the really fundamental and lasting element in the greatness of any dramatic work."

ଆଳଙ୍କାରିକ ଭରତ, ଧନଞ୍ଜୟ, ବିଶ୍ୱନାଥ ନାଟକରେ ନାୟକ ଚରିତ୍ରର ବୈଶିଷ୍ଟ୍ୟ, ନାୟକ-ନାୟିକା ଶ୍ରେଣୀବିଭାଗ, ସହଯୋଗୀ ଚରିତ୍ର, ପ୍ରତିନାୟକ ଚରିତ୍ର, ଗୌଣ ଚରିତ୍ର ଚରିତ୍ରର ଭାଷା, ସମ୍ବୋଧନ ରୀତି ଆଦି ବିଷୟରେ ବିସ୍ତୃତ ଭାବେ ଆଲୋଚନା କରିଛନ୍ତି । ଏମାନଙ୍କ ମତରେ- ନାଟ୍ୟ ଘଟଣାକୁ ଯିଏ ପରିଣାମ ଆଡ଼କୁ ବାଟ କଢ଼ାଇ ନିଏ, ସେ ହେଲେ ନାୟକ । ସେ ଉଚ୍ଚବଂଶସମ୍ଭୂତ, ସୁଦର୍ଶନ, ବିନୟୀ, ଉଦାର, କଳାରସିକ, ବୀର, ଦୃଢ଼ଚେତା ଆଦି ଗୁଣର ଅଧିକାରୀ ହେବା ଦରକାର । ସେହିପରି ନାୟିକା ହେଉଛି ସ୍ୱୀୟା, ଅନନ୍ୟା ଏବଂ ସାଧାରଣୀ । ନାୟକ ସହିତ ସମ୍ପର୍କ ଦୃଷ୍ଟିକୋଣରୁ ନାୟିକାର ମଧ୍ୟ ଆଠଟି ଭେଦ ରହିଛି ; ଯଥା - ସ୍ୱାଧୀନଭର୍ତ୍ତୃକା, ବାସକସଜ୍ଜା, ବିରହଉତ୍କଣ୍ଠିତା, ଖଣ୍ଡିତା, ବିପ୍ରଲବ୍ଧା, ପ୍ରୋଷିତଭର୍ତ୍ତୃକା ଏବଂ ଅଭିସାରିକା । ଆଳଂକାରିକଗଣ ବିଭିନ୍ନ ଚରିତ୍ରର ବୈଶିଷ୍ଟ୍ୟ ନିର୍ଦ୍ଦିଷ୍ଟ କରିଛନ୍ତି । ବୃତ୍ତ ସହିତ ସେମାନଙ୍କ ସମ୍ପର୍କ କୌଣସିଠାରେ ନିର୍ଣ୍ଣୟ କରାଯାଇ ନାହିଁ । ନାୟକ ଚରିତ୍ରର ସଙ୍ଗତି ବିଷୟରେ କହିଛନ୍ତି । କିନ୍ତୁ ଅନ୍ୟ ଚରିତ୍ରର ସଂଗତି ବିଷୟରେ କିଛି କହି ନାହାନ୍ତି । ଆରିଷ୍ଟଟଲଙ୍କ 'ଯଥାଯଥ' ଚରିତ୍ର ସହିତ ପ୍ରାଚ୍ୟ ଆଳଙ୍କାରିକଗଣ ମଧ୍ୟ ଏକମତ ହୁଅନ୍ତି । ପ୍ରାଚ୍ୟ ଆଳଙ୍କାରିକଗଣ ଚରିତ୍ରର ଭଲଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିବାବେଳେ ଆରିଷ୍ଟଟଲ ଚରିତ୍ରକୁ ବାସ୍ତବ ଏବଂ ସମ୍ଭାବ୍ୟ କରି ଗଢ଼ି ତୋଳିଛନ୍ତି ।

**ସଂଳାପ** - ନାଟ୍ୟବୃତ୍ତକୁ ଗତିଶୀଳ କରାଇବା ଲାଗି ପାତ୍ରପାତ୍ରୀଗଣଙ୍କ ପାରସ୍ପରିକ ଉକ୍ତି ପ୍ରତ୍ୟୁକ୍ତିକୁ ସଂଳାପ କୁହାଯାଏ । The Art of Poetryରେ ଆରିଷ୍ଟଟଲ ଭାଷା, ଶବ୍ଦ ଓ ରୀତି ସମ୍ପର୍କରେ ବିଶଦଭାବେ ଆଲୋଚନା କରିଛନ୍ତି । ତାଙ୍କ ମତରେ, ଭାଷାର ଆଦର୍ଶ ରୀତି ସ୍ୱଚ୍ଛ ହେବା ଦରକାର । ନାନା ଧରଣର ରୀତି ପ୍ରୟୋଗ ମଧ୍ୟରେ ସଙ୍ଗତି ରକ୍ଷିତ ହେବା ଦରକାର । ରୂପକ ପ୍ରୟୋଗରେ ଦକ୍ଷତା ଥିବା ଆବଶ୍ୟକ । ଅର୍ଥାତ୍ ଆରିଷ୍ଟଟଲଙ୍କ ବକ୍ତବ୍ୟରୁ ରୀତିର ସ୍ୱଚ୍ଛତା, ସମୁନ୍ନତ ରୀତି, ରୀତି ପ୍ରୟୋଗରେ ସଙ୍ଗତି, ରୂପକ ପ୍ରୟୋଗରେ ଗୁରୁତ୍ୱ ଆଦି ବିଷୟରେ ଜଣାପଡ଼େ ।

ପ୍ରାଚ୍ୟ ଆଳଙ୍କାରିକଗଣ ନାଟକର ଭାଷା ଓ ରଚନା ରୀତି ସମ୍ପର୍କରେ ଆଲୋଚନା କରିଛନ୍ତି । ନାଟ୍ୟଶାସ୍ତ୍ରରେ ୪ଟି ରୀତି ବା ବୃତ୍ତିର ଉଲ୍ଲେଖ ଅଛି ; ଯଥା - କୌଶିକୀ, ସାତ୍ତ୍ୱତୀ, ଆରଭଟୀ ଓ ଭାରତୀ । ବିଶ୍ୱନାଥଙ୍କ ମତରେ, ନାନା ଭାବରେ ବ୍ୟଞ୍ଜନାପୂର୍ଣ୍ଣ ଗଭୀର ଉକ୍ତି ହେଉଛି ସଂଳାପ । ଭରତଙ୍କ ମତରେ, ନାଟ୍ୟସଂଳାପ ପଦ୍ୟରେ ରଚିତ ହେବା ସଙ୍ଗେ ସଙ୍ଗେ ତାହା ଛନ୍ଦବଦ୍ଧ ହେବା ଦରକାର । ବିଭିନ୍ନ ରସର ଅନୁକୂଳ ଛନ୍ଦର ପ୍ରୟୋଗ କରାଯିବ । ଉଦ୍ଦିଷ୍ଟ ଅର୍ଥକୁ ଚାହି ଯଥାର୍ଥ ଶବ୍ଦ ପ୍ରୟୋଗ କରିବାକୁ ହେବ । ନାଟ୍ୟଶାସ୍ତ୍ରରେ ଦୁରୂହ ଶବ୍ଦ ବର୍ଜନ, ଦର୍ଶନ ବୋଧଗମ୍ୟ ଶବ୍ଦାର୍ଥର ସୁଷମ ପ୍ରୟୋଗ, ରସାନୁକୂଳ ଓ ନୃତ୍ୟ ସହିତ ସଂଗତିପୂର୍ଣ୍ଣ ବାକ୍ୟଗଠନ ଆଦିଦ୍ୱାରା ନାଟକକୁ ଆକର୍ଷଣୀୟ କରାଯାଇଥାଏ । ସାହିତ୍ୟ ଦର୍ପଣରେ ୫ ପ୍ରକାର ଉପମା, ରୂପକ, ୧୦ ପ୍ରକାର ଯମକ, ୩୩ ପ୍ରକାର ଅଳଂକାର, ୧୬ ପ୍ରକାର ବୀଥାଙ୍ଗ, ୧୦ ପ୍ରକାର ଲାସ୍ୟାଙ୍ଗର ପ୍ରୟୋଗ ବିଧି ବିଷୟରେ ଆଲୋଚନା କରାଯାଇଛି । ଉଭୟ ଭରତ ଏବଂ ଆରିଷ୍ଟଟଲ ନାଟକର ଭାଷା ବା ସଂଳାପ ଦୈନନ୍ଦିନ ଭାଷାଠାରୁ ପୃଥକ୍ ବୋଲି ମତ ଦେଇଛନ୍ତି ।

ତେବେ ନାଟ୍ୟସଂଳାପ ନାଟକୀୟ ହେବା ଦରକାର । ନାଟକର ବୃତ୍ତ ଏବଂ ଚରିତ୍ର ସହିତ ସଂଳାପର ସମ୍ପର୍କ ନିବିଡ଼ । ଅବାସ୍ତବ ସଂଳାପ ବର୍ଜନୀୟ । ବାକ୍ୟ ଓ ଶବ୍ଦରେ ନାଟ୍ୟଶ୍ଳେଷର ପ୍ରୟୋଗ, ନାନା ଅଳଙ୍କାରର ସନ୍ନିବେଶ, ନାନା ରୂପକଳ୍ପ ସୃଷ୍ଟି ମାଧ୍ୟମରେ ସଂଳାପକୁ ପ୍ରଶଂସନୀୟ କରିବାକୁ ହେବ ।

**ସଙ୍ଗୀତ** - ଆରିଷ୍ଟଟଲ ଟ୍ରାଜେଡ଼ିର ଆଲୋଚନା ପ୍ରସଙ୍ଗରେ ସଙ୍ଗୀତକୁ ନାଟକର ଅନ୍ୟତମ ଉପାଦାନ ଭାବେ ଗ୍ରହଣ କରିଛନ୍ତି । ଟ୍ରାଜେଡ଼ିର ଅଭିନୟକୁ ଆନନ୍ଦଦାୟକ କରି ଗଢ଼ି ତୋଳିଥାଏ ସଙ୍ଗୀତ । ପୋଏଟିକ୍ସ ଗ୍ରନ୍ଥରେ, ସେ ନାଟକରେ କୋରସ୍‌ର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଷୟ ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ "The chorus too should be regarded as one of the actors, it should be an integral part of the whole and share in the action, in the manner not of Euripides but of Sophocles." ଗ୍ରୀକ୍ ନାଟକର ଉଦ୍ଭବ ହୋଇଛି ଡିଥିରାମ୍ବ ଓ କ୍ଲାସିକ କୋରସ ଗୀତରୁ । ଅର୍ଥାତ୍ ଗୀତକୁ ନାଟକର ଏକ ଉପାଦାନ ରୂପେ ଗ୍ରହଣ କରାଯାଇଛି । ଅବଶ୍ୟ ଆଧୁନିକ କାଳର ଟ୍ରାଜେଡ଼ି ଓ କମେଡ଼ିରେ ସଙ୍ଗୀତର ସ୍ଥାନ କ୍ରମେ ସଙ୍କୁଚିତ ହୋଇଯାଇଛି ।

ଆଚାର୍ଯ୍ୟ ଭରତ ମଧ୍ୟ ନାଟ୍ୟଶାସ୍ତ୍ରରେ ସଙ୍ଗୀତର ଗୁରୁତ୍ୱକୁ ସ୍ୱୀକାର କରିଛନ୍ତି । ନାଟ୍ୟବେଦ ସୃଷ୍ଟିକାଳରେ ଭରତ 'ସାମବେଦ'ରୁ ଗୀତ ଗ୍ରହଣ କରିଥିଲେ । 'ସଙ୍ଗୀତରତ୍ନାକର' ଗ୍ରନ୍ଥରେ କୁହାଯାଇଛି ନୃତ୍ୟ, ଗୀତ ଓ ବାଦ୍ୟର ସମ୍ମିଶ୍ରଣର ନାମ ସଂଗୀତ । ଅର୍ଥାତ୍ ''ନୃତ୍ୟଂ ଗୀତଂ ବାଦ୍ୟଂ ତ୍ରୟଂ ସଙ୍ଗୀତମୁଚ୍ୟତେ ।'' ପ୍ରାଚୀନଭାରତରେ 'ନାଟ୍ୟଶାଳା'କୁ 'ସଙ୍ଗୀତଶାଳା' ନାମରେ ଅଭିହିତ କରାଯାଇଛି । ପ୍ରାଚୀନ ଭାରତରେ

ନାଟ୍ୟାନୁଷ୍ଠାନରେ ତିନିଶ୍ରେଣୀର ସଙ୍ଗୀତ ସନ୍ନିବେଶିତ କରାଯାଇଛି । ନାଟ୍ୟାନୁଷ୍ଠାନ ପୂର୍ବରୁ 'ପୂର୍ବରଙ୍ଗ'ରେ ସଙ୍ଗୀତ ସ୍ଥାନ ପାଇଥାଏ । ଅଙ୍କ ଶେଷରେ ରସାନୁକୂଳ ସଙ୍ଗୀତ ଗାଇବାର ପରମ୍ପରା ପ୍ରାଚୀନ କାଳରେ ନାଟକରେ ଥିଲା । ଗୀତ ହେଉଛି ନାଟ୍ୟର ଏକ ଅଙ୍ଗୀଭୂତ ରସ । ଭରତଙ୍କ ପରବର୍ତ୍ତୀ ଆଳଙ୍କାରିକଗଣ ସଙ୍ଗୀତ ବିଷୟରେ ବିଶେଷ ଆଲୋଚନା କରି ନାହାନ୍ତି । କାରଣ ପାତ୍ରପାତ୍ରୀଙ୍କ କଣ୍ଠସଙ୍ଗୀତର ପ୍ରଚଳନ ମଧ୍ୟ କ୍ରମଶଃ ହ୍ରାସ ପାଇଥିଲା । ଭାରତୀୟ ଆଳଙ୍କାରିକମାନଙ୍କ ମତରେ ସଙ୍ଗୀତ ରସାନୁକୂଳ ହେବ ଏବଂ ଔଚିତ୍ୟ ଅନୁଯାୟୀ ପାତ୍ରପାତ୍ରୀ କଣ୍ଠରେ ଏକକ ହେଉ ବା ସମବେତ ଭାବରେ ହେଉ ସଂଯୋଜିତ ହେବ ।

ଦୃଶ୍ୟ - ଆରିଷ୍ଟଟଲ ଟ୍ରାଜେଡ଼ିର ଷଷ୍ଠ ଉପାଦାନରୂପେ ଦୃଶ୍ୟକୁ ନିର୍ଦ୍ଦେଶ କରିଛନ୍ତି । The Art of Poetry ଗ୍ରନ୍ଥରେ କୁହାଯାଇଛି Spectacular equipment will be a part of Tragedy ଅର୍ଥାତ୍ Spectacle ଅର୍ଥ 'Stage-appearance of the actors' ବୋଲି ଧରାଯାଇଛି । ଆରିଷ୍ଟଟଲଙ୍କ ମତରେ, ମଞ୍ଚରେ ଯେଉଁ ରୂପସଜ୍ଜା ଓ ଅଭିନେତାଙ୍କ ଅଙ୍ଗଭଙ୍ଗୀ ଦର୍ଶକମାନଙ୍କ ଉପରେ ପ୍ରଭାବ ପକାଇଥାଏ, ତାହାହିଁ ଦୃଶ୍ୟ । ଗ୍ରୀକ୍ ରଙ୍ଗମଞ୍ଚରେ ଦୃଶ୍ୟପଟ ନ ଥିଲା । ନାଟ୍ୟ ବର୍ଣ୍ଣିତ ବିଷୟ ବା ନାଟକର ପାତ୍ରପାତ୍ରୀଙ୍କ ଅବସ୍ଥା ଓ ଅବସ୍ଥାନକୁ ଦେଖାଇବା ହେଲା ଦୃଶ୍ୟର ଉଦ୍ଦେଶ୍ୟ । ଏହିପରି ନାଟ୍ୟସ୍ଥାନ ଏବଂ ଘଟଣାର ପ୍ରେକ୍ଷାପଟକୁ ଦୃଶ୍ୟ କରାଇବା ହେଲା ଆରିଷ୍ଟଟଲଙ୍କ ଉଦ୍ଦେଶ୍ୟ । ପରବର୍ତ୍ତୀ କାଳରେ, ଦୃଶ୍ୟପଟରେ ଅଙ୍କିତ ଚିତ୍ର ସାହାଯ୍ୟରେ ଏବଂ ପାତ୍ରପାତ୍ରୀଙ୍କ ହାବଭାବ, କ୍ରିୟାକଳାପ ଏବଂ ସାଜସଜ୍ଜା ଆଦି ଦୃଶ୍ୟମାନ ହୋଇଉଠେ । ପୋଷାକପତ୍ର ଏବଂ ଅଙ୍ଗଭଙ୍ଗୀ ସାହାଯ୍ୟରେ ଅନେକ କିଛି ଦୃଶ୍ୟ ହୋଇଉଠେ ।

ଭାରତୀୟ ଆଳଙ୍କାରିକଗଣ ନାଟକର ଦୃଶ୍ୟ ବିଷୟରେ ବେଶ୍ ସଚେତନ । ସଂସ୍କୃତ ନାଟକରେ କୌଣସି ଦୃଶ୍ୟପଟ ଦେଖାଯାଏନି । ମଞ୍ଚର ପଛଭାଗରେ ଗୋଟିଏ ପରଦା କେବଳ ଥିଲା । ନାଟକର ଯେଉଁ ସ୍ଥାନଟିକୁ ଦୃଶ୍ୟ କରିବାକୁ ଚାହୁଁଥିଲେ, ପାତ୍ରପାତ୍ରୀଙ୍କ ବର୍ଣ୍ଣନା ଉପରେ ନିର୍ଭର କରି ଦର୍ଶକଗଣ ସେହି ଦୃଶ୍ୟକୁ ଅନୁମାନ କରିନେଉଥିଲେ । ଦୃଶ୍ୟପଟର ଅଭାବକୁ ଏଇଭାବେ ପୂରଣ କରାଯାଉଥିଲା । ନେପଥ୍ୟ ବ୍ୟବସ୍ଥା ବା ଆହାର୍ଯ୍ୟ ଅଭିନୟ ଦ୍ୱାରା ମଧ୍ୟ କିଛିଟା ଅଭାବକୁ ପୂରଣ କରାଯାଉଥିଲା ଏବଂ ତା' ସହିତ ପାତ୍ରପାତ୍ରୀଙ୍କ ବାହ୍ୟ ପରିଚୟକୁ ସୁନ୍ଦରଭାବେ ଦୃଶ୍ୟ କରାଯାଉଥିଲା, ଆଙ୍ଗିକ ଅଭିନୟ ମାଧ୍ୟମରେ ଅଙ୍ଗଭଙ୍ଗୀ ଦୃଶ୍ୟ ହେଉଥିଲା । ସାତ୍ତ୍ୱିକ ଅଭିନୟ ମାଧ୍ୟମରେ ଶାରୀରିକ ବିକାର ବା ଅବସ୍ଥାର ସୂଚନା ଦିଆଯାଉଥିଲା । ମୋଟ ଉପରେ ପ୍ରାଚୀନ ଭାରତରେ ଦୃଶ୍ୟପଟ ନ ଥିଲେ ମଧ୍ୟ, ବିଭିନ୍ନ ନାଟ୍ୟଘଟଣାକୁ ଦୃଶ୍ୟକରି ଅଭିନୟର ବ୍ୟବସ୍ଥା କରାଯାଉଥିଲା ।

ଆରିଷ୍ଟଟଲଙ୍କ ମତରେ, ନାଟ୍ୟ ପ୍ରଯୋଜକର କଳାକୌଶଳ ଉପରେ ଦୃଶ୍ୟର ସାର୍ଥକତା ନିର୍ଭର କରିଥାଏ । ନାଟକରେ ଦୃଶ୍ୟ, ରସର ଆଲମ୍ବନ ନ ହୋଇ ଉଦ୍ଦୀପନ ହୋଇପାରିଲେ, ଦୃଶ୍ୟଧର୍ମିତାର ସାର୍ଥକତା ପ୍ରତିପାଦିତ ହୋଇପାରିବ ।

**ଭାବନା ବା ଚିନ୍ତା** - ଆରିଷ୍ଟଟଲ 'ପୋଏଟିକ୍ସ'ରେ ଭାବନା ବା ଚିନ୍ତା (Thought) ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଚରିତ୍ର ଓ ସଂଳାପ ସହିତ ଭାବନାର ଅନ୍ତରଙ୍ଗ ଯୋଗାଯୋଗ ରହିଛି । କୌଣସି ଘଟଣାକୁ ଅତିରଞ୍ଜିତ, ଗୁରୁ କିମ୍ବା ଲଘୁ କରି ଦେଖାଇବାକୁ ହେଲେ, ଭାବନାର ସଦ୍‌ବ୍ୟବହାର କରିବାକୁ ହିଁ ପଡ଼ିବ । ଏହାଛଡ଼ା କେତେକ ସାତ୍ତ୍ୱିକ ବିକାର ଯଥା କାରୁଣ୍ୟ, ଭୟ, କ୍ରୋଧ ଆଦିକୁ ପରିସ୍ଫୁଟନ କରିବାକୁ ହେଲେ 'ଭାବନା'ର ସାହାଯ୍ୟ ନେବାକୁ ହିଁ ହେବ । ନାଟ୍ୟ ଚରିତ୍ରର କ୍ରିୟାକଳାପ ସହିତ ମନର ଗତିବିଧିର ମଧ୍ୟ ସମ୍ପର୍କ ରହିବା ଉଚିତ, ତା' ନ ହେଲେ ଭାବସଞ୍ଚାର ହୋଇପାରିବ ନାହିଁ । ନାନାବିଧ କ୍ରିୟାଦ୍ୱାରା ଦର୍ଶକ ଚିତ୍ତରେ ଭାବର ଉଦ୍ରେକ କରାଯାଇଥାଏ । ଚରିତ୍ର ମଧ୍ୟ ତାର ସଂଳାପ ମାଧ୍ୟମରେ ଉଦ୍ଦିଷ୍ଟ ଭାବକୁ ଜାଗ୍ରତ କରିପାରେ । ଅର୍ଥାତ୍ କୌଣସି ପରିସ୍ଥିତିରେ ଚିନ୍ତାକୁ ବାଦ୍ ଦେଇହେବ ନାହିଁ । ଏହା ହେଉଛି ଆରିଷ୍ଟଟଲଙ୍କ ମତ । କେବଳ ଏତିକି ସୂଚନା ସେ ଦେଇଛନ୍ତି ।

ଯେକୌଣସି ସଂଳାପରେ ଚରିତ୍ରର ଚିନ୍ତାଶକ୍ତି ପ୍ରତିଧ୍ୱନିତ ହୋଇଥାଏ ବା ସକ୍ରିୟ ଭୂମିକା ଗ୍ରହଣ କରିଥାଏ । କୌଣସି ଏକ ନିର୍ଦ୍ଦିଷ୍ଟ ବିଷୟକୁ ଯେତେବେଳେ ଚରିତ୍ର ପ୍ରତିଷ୍ଠିତ କରିବାକୁ ଯାଏ, ସେତେବେଳେ ନାନା ସୂକ୍ଷ୍ମ ଚିନ୍ତା ତା' ସହିତ ସ୍ଥାନ ପାଇଥାଏ । ଜୀବନରେ ନାନା ସମସ୍ୟା ଥିବାରୁ ମଣିଷର ଚିନ୍ତାଶକ୍ତି ବୃଦ୍ଧି ପାଇଥଏ । ବର୍ଣ୍ଣାଡ଼ ଶ'ଙ୍କ ମତରେ, ନାଟକରେ ବିଷୟର ଗୁରୁତ୍ୱ ରହିଛି । ନାଟକରେ ଆଲୋଚନା ବା ଡିସ୍‌କସନ ଛଡ଼ା ଆଉ କିଛି ଦେଖିବାକୁ ମିଳେନା । ନିଛକ ଭାବନାଦ୍ୱାରା ସାହିତ୍ୟ ସୃଷ୍ଟି କରାଯାଇପାରେନା । ସାହିତ୍ୟରେ ତାର ରସଘନ ରୂପ ପ୍ରତିଫଳିତ ହେବା ଦରକାର । ଅର୍ଥାତ୍ ନାଟକରେ ଚିନ୍ତା ବା ଭାବନାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

## ରୂପକ

କାବ୍ୟ ଦୁଇ ପ୍ରକାରର ; ଯଥା - ଦୃଶ୍ୟ ଏବଂ ଶ୍ରାବ୍ୟ । ଯାହାର ଅଭିନୟ ସମ୍ଭବ ଏବଂ ଯାହା ସାମାଜିକମାନେ ଦେଖିପାରିବେ, ତାହା ହେଉଛି ଦୃଶ୍ୟ କାବ୍ୟ । ଦୃଶ୍ୟକାବ୍ୟକୁ ରୂପକ ମଧ୍ୟ କୁହାଯାଏ । ରୂପର ସ୍ଥାନ ହୋଇଥିବା କାରଣରୁ ଦୃଶ୍ୟ କାବ୍ୟକୁ ରୂପକ କୁହାଯାଏ । ଅଭିନେତା ଦୁଷ୍ମନ୍ତ, ରାମ ଆଦିଙ୍କ ରୂପଧାରଣ କରି ଦର୍ଶକମାନଙ୍କୁ ବା ସାମାଜିକମାନଙ୍କୁ ଆନନ୍ଦ ଦେଇଥାଏ । ଧନଞ୍ଜୟଙ୍କ ମତରେ - ''ରୂପକଂ ତତ୍‌ସମାରୋପାତ୍'' ଅର୍ଥାତ୍ ତାକୁ ହିଁ ନାଟ୍ୟରୂପକ କୁହାଯିବ, ଯେଉଁଥିରେ ଆରୋପ ଉପଲବ୍‌ଧ ହୁଏ । ଧନଞ୍ଜୟ ମତରେ ରୂପକର କଥାବସ୍ତୁ ତିନି ପ୍ରକାର ଯଥା - ପ୍ରଖ୍ୟାତ, ଉତ୍‌ପାଦ୍ୟ ଏବଂ ମିଶ୍ର । ସେହିପରି ନାୟକ ମଧ୍ୟ ତିନିପ୍ରକାର ଯଥା - ଉତ୍ତମ, ମଧ୍ୟମ

ଏବଂ ଅଧମ ବା ନୀଚ । ରସ ମଧ୍ୟ ଆଠ ପ୍ରକାର, କେବଳ ଶାନ୍ତ ରସକୁ ଛାଡ଼ି । ଏହିପରି ବସ୍ତୁ, ନାୟକ ଏବଂ ରସର ବିଭିନ୍ନ ଭେଦ ନିର୍ଣ୍ଣୟ କରାଯାଇଛି । ଭରତ ରୂପକର ଦଶପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି ଯଥା - ନାଟକ, ପ୍ରକରଣ, ଭାଣ, ପ୍ରହସନ, ଡିମ, ବ୍ୟାୟୋଗ, ସମବକାର, ବୀଥୀ, ଅଙ୍କ ଓ ଈହାମୃଗ । ଧନଞ୍ଜୟ, ବିଶ୍ୱନାଥ ମଧ୍ୟ ଏହି ଭେଦକୁ ସ୍ୱୀକାର କରିଛନ୍ତି । ଏତଦ୍‌ବ୍ୟତୀତ ବିଶ୍ୱନାଥ ଅଠର ଉପରୂପକର ଭେଦ ମଧ୍ୟ ବାଢ଼ିଛନ୍ତି ।

ଅଗ୍ନିପୁରାଣରେ ରୂପକର ତେର ପ୍ରକାର ଉପରୂପକର ଉଲ୍ଲେଖ ରହିଛି । ଶାରଦାତନୟ ଭାବପ୍ରକାଶନମ୍‌ରେ ଭରତଙ୍କୁ ସମର୍ଥନ କରିଛନ୍ତି । ଜୈନ ଆଚାର୍ଯ୍ୟ ରାମଚନ୍ଦ୍ର ଗୁଣଚନ୍ଦ୍ର ନାଟ୍ୟଦର୍ପଣ ଗ୍ରନ୍ଥରେ ରୂପକର ସଂଖ୍ୟା ବାର ବୋଲି ନିର୍ଣ୍ଣୟ କରିଛନ୍ତି । ଦଶରୂପକ ସହିତ ସେ ନାଟିକା ଏବଂ ପ୍ରକରଣୀ ନାମକ ଦୁଇଟି ରୂପକର ସଂଯୋଗ କରିଛନ୍ତି ।

**ନାଟକ -** ରୂପକର ପ୍ରଥମ ଭେଦ ହେଉଛି ନାଟକ । ଏହା ସବୁଠୁ ପ୍ରସିଦ୍ଧ ଏବଂ ମହତ୍ତ୍ୱପୂର୍ଣ୍ଣ ଅଟେ । ନାଟ୍ୟଶାସ୍ତ୍ର ବିଷୟକ ସବୁ ଲକ୍ଷଣ ଏଥିରୁ ମିଳେ । ବୀର ଏବଂ ଶୃଙ୍ଗାର ରସର ପ୍ରାଧାନ୍ୟ ଏଥିରେ ଥିଲେ ମଧ୍ୟ ଅନ୍ୟ ସବୁ ରସ ସ୍ଥାନଲାଭ କରିଥାଏ । ନାଟକର ନାୟକ ସର୍ବଗୁଣସମ୍ପନ୍ନ । ସେ ଧୀରୋଦାତ୍ତ ପ୍ରକୃତିର ଏବଂ ପ୍ରତାପୀ । ସେ ବେଦର ରକ୍ଷକ, ଦିବ୍ୟପୁରୁଷ । ଇତିହାସ, ପୁରାଣର ପ୍ରସିଦ୍ଧ କଥାବସ୍ତୁ ନାଟକରେ ଅଧିକାରିକ କଥାବସ୍ତୁ ଭାବେ ସ୍ଥାନ ଲାଭ କରିଥାଏ ।

ନାଟକରେ ପାଞ୍ଚରୁ ଦଶ ପର୍ଯ୍ୟନ୍ତ ଅଙ୍କ ରହେ । ଯଦି କୌଣସି ନାଟକରେ ଦଶ ଅଙ୍କ ଥାଏ, ସବୁ ଅର୍ଥପ୍ରକୃତି ତଥା ସନ୍ଧି ସ୍ଥାନ ପାଇଥାଏ, ତେବେ ତାହାକୁ ମହାନାଟକ କୁହାଯାଏ । ଶାରଦାତନୟଙ୍କ ମତରେ ନାଟକରେ ୫ ଅର୍ଥ ପ୍ରକୃତି, ୫ ଅବସ୍ଥା, ୬୪ ଅଙ୍ଗ, ୪ ବୃତ୍ତି, ୫ ସନ୍ଧି, ୨୧ ସନ୍ଧ୍ୟନ୍ତର, ୩୬ ଭୂଷଣ, ୧୦ ସଙ୍ଗୀତାଙ୍ଗ ରହିଥାଏ । ଶାରଦାତନୟ ନାଟକ ବିଷୟରେ ବେଶି ଭରତ ଏବଂ ଧନଞ୍ଜୟଙ୍କୁ ଅନୁସରଣ କରିଛନ୍ତି । ସୁବନ୍ଧୁଙ୍କ ମତରେ ନାଟକ ପାଞ୍ଚପ୍ରକାର ଯଥା - ପୂର୍ଣ୍ଣ, ପ୍ରଶାନ୍ତ, ଭାସ୍ୱର, ଲଳିତ ଏବଂ ସମଗ୍ର । ନାଟକ ସଦାବେଳେ ସୁଖାନ୍ତ ବା ପ୍ରସାଦାନ୍ତ ହୋଇଥାଏ । ନାଟକର ଗଦ୍ୟ ସରଳ ଏବଂ ଏଥିରେ ସମାସ ନ ଥାଏ । ପଦ୍ୟ ମଧୁର ଏବଂ ସ୍ପଷ୍ଟ ହୋଇଥାଏ । ନାଟକର ଶୀର୍ଷକ ନାୟକ ଅଥବା ବିଷୟବସ୍ତୁ ଅନୁସାରେ ହୋଇଥାଏ । ରୂପକର ପୂର୍ଣ୍ଣତା ନାଟକରେ ହିଁ ଥାଏ ।

**ପ୍ରକରଣ -** ପ୍ରକରଣ ପ୍ରାୟତଃ ସବୁ କଥାରେ ନାଟକର ସମାନ ହୋଇଥାଏ । ପ୍ରକରଣର କଥାବସ୍ତୁ ପ୍ରଖ୍ୟାତ ହୋଇ ନ ଥାଏ । ଏଥିରେ ରାଜାରାଣୀଙ୍କ କଥା ସ୍ଥାନ ନ ପାଇ, ମଧ୍ୟମ ବର୍ଗର ସାମାନ୍ୟ ବ୍ୟକ୍ତିର କଥା ସ୍ଥାନ ପାଇଥାଏ । ପ୍ରକରଣରେ ନାୟକ

ବ୍ରାହ୍ମଣ, ମନ୍ତ୍ରୀ ଅଥବା ବଣିକ ହୋଇଥାଏ । ମୃଚ୍ଛକଟିକମ୍‌ରେ ବ୍ରାହ୍ମଣ, ମାଳତୀମାଧବରେ ଅମାତ୍ୟ, ପୁଷ୍ପଦୂତିକାରେ ବୈଶ୍ୟ ନାୟକ । ଏଥିରେ ନାୟକ ଧୀରପ୍ରଶାନ୍ତ ହୋଇଥାଏ । ତାଙ୍କର କାର୍ଯ୍ୟର ସଫଳତା ନାନା ବିଘ୍ନଦ୍ୱାରା ଯୁକ୍ତ । ପ୍ରକରଣର ନାୟକ ତ୍ରିବର୍ଗ ଅର୍ଥାତ୍ ଧର୍ମ, ଅର୍ଥ, କାମରେ ତତ୍ପର ରହିଥାଏ ।

ପ୍ରକରଣରେ ନାୟିକା ଦୁଇପ୍ରକାରର ଯଥା - କୁଳୀନ ସ୍ତ୍ରୀ ଏବଂ ଗଣିକା । ଏଥିରେ ବିଟ, ଚେଟ, ଶକାର, ସାର୍ଥବାହ ଆଦି ଅନେକ ପ୍ରକାରର ଧୂର୍ତ୍ତମାନଙ୍କର ସମାବେଶ ଘଟିଥାଏ । ଏ ପ୍ରକାର ପ୍ରକରଣକୁ ସଂକୀର୍ଣ୍ଣ ବା ମିଶ୍ରିତ କୁହାଯାଏ । ପ୍ରକରଣର ମୁଖ୍ୟ ରସ ଶୃଙ୍ଗାର । ଅବଶ୍ୟ ଧନଞ୍ଜୟ ମଧ୍ୟ ବୀରରସର ସମର୍ଥନ କରନ୍ତି । ନାୟକ, ନାୟିକାଙ୍କ ନାମ ଅନୁସାରେ ଶୀର୍ଷକ ରହିଥାଏ । ଯଥା - ମାଳତୀ ମାଧବ, ଶାରିପୁତ୍ତ । ଏଥିରେ କବି ପ୍ରତିଭାର ସ୍ଫୁରଣ ଘଟିଥାଏ । ପ୍ରକରଣ ସାମାନ୍ୟ ଜୀବନର ସ୍ୱଚ୍ଛ ତଥା ତରଳ ସ୍ରୋତଦ୍ୱାରା ଅନୁପ୍ରାଣିତ ହୋଇଥାଏ । ପ୍ରକରଣ ଚରିତ୍ର ସାଧାରଣ ଜୀବନରୁ ଆସିଥାଏ ।

**ଭାଣ -** ଭାଣ ହେଉଛି ଏକ ଅଙ୍କର ରୂପକ । ବିଟ ହିଁ ଏହାର ଏକମାତ୍ର ଚରିତ୍ର । ରଙ୍ଗମଞ୍ଚକୁ ଅନ୍ୟକୌଣସି ଚରିତ୍ର ଆସି ନ ଥାଏ । ସେ ଆକାଶଭାଷିତ ସଂଳାପକୁ ଆଶ୍ରୟ କରି ବାର୍ତ୍ତାଳାପ କରିଥାଏ । ଏଥିରେ କୌଣସି ରସ ସ୍ପଷ୍ଟ ରୂପେ ପ୍ରକାଶିତ ହୋଇ ନ ଥାଏ । ସୌଭାଗ କିମ୍ବା ଶୌର୍ଯ୍ୟର ବର୍ଣ୍ଣନା ବେଳେ ଶୃଙ୍ଗାର ବା ବୀରରସ ଅଭିବ୍ୟକ୍ତ ହୋଇଥାଏ । ଭାଣରେ ଭାରତୀ ବୃତ୍ତିର ପ୍ରଧାନ୍ୟ ଥାଏ । ସ୍ଥଳବିଶେଷରେ କୈଶିକୀ ବୃତ୍ତି ମଧ୍ୟ ସ୍ଥାନ ଲାଭ କରିଥାଏ ।

ଏଥିରେ କେବଳ ମୁଖ ଏବଂ ନିର୍ବହଣ ଦୁଇଟି ସନ୍ଧିର ଉପଯୋଗ ହୋଇଥାଏ । ଭାଣର ଇତିବୃତ୍ତ କବିକଳ୍ପନା ଉପରେ ଆଧାରିତ । ଏଥିରେ ଧୂର୍ତ୍ତ ଚରିତ୍ର ଥାଏ । ଏହାର ନାୟକ ବିଟ । ବାର୍ତ୍ତାଳାପ ହେଉଛି ଆକାଶଭାଷିତ । ଭାଣ ବିଷୟରେ ଦଶ ଲାସ୍ୟାଙ୍ଗର ଉଲ୍ଲେଖ ଦେଖାଯାଏ । ଏହା ହେଉଛି ସଙ୍ଗୀତର ଭେଦ । ଏହି ଦଶଅଙ୍ଗ ହେଉଛି - ଗେୟପଦ, ସ୍ଥିତ ପାଠ୍ୟ, ଆସୀନ, ପୁଷ୍ପଗଣ୍ଡିକା, ପ୍ରଚ୍ଛେଦକ, ତ୍ରିଗୂଢ଼, ସୈନ୍ଧବ, ଦ୍ୱିଗୂଢ଼କ, ଉତ୍ତମୋତ୍ତମକ ତଥା ଉକ୍ତି-ପ୍ରତ୍ୟୁକ୍ତି ।

**ପ୍ରହସନ -** ଏହାର କଥାବସ୍ତୁ କବି କଳ୍ପିତ ତଥା ଲୋକ ସଂଶ୍ରୟ ଉପରେ ଆଧାରିତ । ସାଧାରଣ ଜନତାର ରୁଚି ଅନୁସାରେ ଏହାର ଉତ୍ପତ୍ତି ହୋଇଥାଏ । ଏଥିରେ ନିମ୍ନ ଧରଣର ଚରିତ୍ର ଥାଏ । ଏଥିରେ ବସ୍ତୁ, ସନ୍ଧି, ସନ୍ଧ୍ୟଙ୍ଗ, ଲାସ୍ୟାଙ୍ଗ ଆଦି ସ୍ଥାନ ପାଇଥାଏ । ଏହା ଏକ ଅଙ୍କବିଶିଷ୍ଟ । ଏଥିରେ ହାସ୍ୟରସର ପ୍ରାଧାନ୍ୟ ଥାଏ । ଭରତଙ୍କ ମତରେ ପ୍ରହସନ ଦୁଇ ; ପ୍ରକାରର ; ଯଥା - ଶୁଦ୍ଧ ଏବଂ ସଂକୀର୍ଣ୍ଣ । ଧନଞ୍ଜୟଙ୍କ ମତରେ ଏହା ତିନି ପ୍ରକାରର ଯଥା - ଶୁଦ୍ଧ, ବିକୃତ ତଥା ସଙ୍କର ।

ଧନଞ୍ଜୟଙ୍କ ମତରେ ଶୁଦ୍ଧ ପ୍ରହସନର ପାତ୍ର ପାଖଣ୍ଡୀ (ବୌଦ୍ଧ ଜୈନ ଭିକ୍ଷୁ), ବ୍ରାହ୍ମଣ, ଦାସଦାସୀ ଇତ୍ୟାଦି । ଯେଉଁଥିରେ ନପୁଂସକ କଂଚୁକୀ ବା ତପସ୍ୱୀ ଚରିତ୍ର ଥାଏ, ଯିଏ କାମୁକ ବଚନ ବା ବେଶର ପ୍ରୟୋଗ କରେ, ତାହାକୁ ବିକୃତ ପ୍ରହସନ କହନ୍ତି । ଯାହାର ପାତ୍ର ଧୂର୍ତ୍ତ, ତାହାକୁ ସଂକୀର୍ଣ୍ଣ ପ୍ରହସନ କହନ୍ତି । ଏଥିରେ କେବଳ ହାସ୍ୟରସର ପ୍ରୟୋଗ ହୋଇଥାଏ । ଶାରଦାତନୟଙ୍କ ମତରେ ଶୁଦ୍ଧ ପ୍ରହସନ ହେଉଛି ସାଗରକୌମୁଦୀ, ବିକୃତ ପ୍ରହସନ ହେଉଛି କଳିକେଳି, ସଂକୀର୍ଣ୍ଣ ପ୍ରହସନ ହେଉଛି ସୈରନ୍ଧ୍ରିକା । ପ୍ରହସନରେ ଆରଭଟୀ ଏବଂ କୈଶିକୀ ବୃତ୍ତି ନ ଥାଏ । ଏଥିରେ ବିଷମ୍ଭକ ଏବଂ ପ୍ରବେଶକ ସ୍ଥାନ ପାଇ ନ ଥାଏ ।

**ଡିମ-** ଏହା ହେଉଛି ଅଙ୍କାଙ୍କାତ ରୂପକ । ଭରତ ମୁନି 'ତ୍ରିପୁରଦାହ ; ନାମକ ଡିମର ଉଲ୍ଲେଖ କରିଛନ୍ତି । ଏହାର ଇତିବୃତ୍ତ ରାମାୟଣ, ମହାଭାରତ, ପୁରାଣ ଆଦିରୁ ସଂଗୃହୀତ ହୋଇଥାଏ । ଏଥିରେ ତିନୋଟି ବୃତ୍ତି ; ଯଥା - ସାତ୍ୱତୀ, ଆରଭଟୀ, ଭାରତୀ ଆଦିର ସମାବେଶ ଘଟିଥାଏ । ଏହାର ନେତା ମନୁଷ୍ୟେତର ଜାତିର ; ଯଥା - ଦେବତା, ଯକ୍ଷ, ଗନ୍ଧର୍ବ, ରାକ୍ଷସ, ନାଗ ଆଦି । ଭୂତ, ପ୍ରେତ, ପିଶାଚ ଆଦିଙ୍କ ସମାବେଶ ମଧ୍ୟ ଡିମରେ ହୋଇଥାଏ । ଏହାର ପାତ୍ର ଉଦ୍ଧତ ଏବଂ ଏହାର ସଂଖ୍ୟା ୧୬ । ଏଥିରେ ଶୃଙ୍ଗାର, ହାସ୍ୟରସକୁ ଛାଡ଼ି ଅନ୍ୟ ସବୁ ରସର ସମାବେଶ ଘଟିଥାଏ । ତେବେ ପ୍ରଧାନ ରସ ହେଉଛି ରୌଦ୍ର ।

ଡିମରେ ମାୟା, ଇନ୍ଦ୍ରଜାଲ, କ୍ରୋଧ, ଯୁଦ୍ଧ, ଉଦ୍‌ଭ୍ରାନ୍ତି ଆଦି ବର୍ଣ୍ଣିତ ହୋଇଥାଏ । ଏଥିରେ ଚାରୋଟି ଅଙ୍କ ଥାଏ । ବିମର୍ଶ ସନ୍ଧିକୁ ଛାଡ଼ି ଅନ୍ୟ ଚାରୋଟି ସନ୍ଧି ମୁଖ, ପ୍ରତିମୁଖ, ଗର୍ଭ ତଥା ନିର୍ବହଣ ସ୍ଥାନ ପାଇଥାଏ । ଏଥିରେ ବିଷ୍କମ୍ଭକ ତଥା ପ୍ରବେଶକ ନ ଥାଏ ।

**ବ୍ୟାୟୋଗ-** ଇତିହାସପ୍ରସିଦ୍ଧ କଥାବସ୍ତୁ ଏଥିରେ ସ୍ଥାନ ପାଇଥାଏ । କୌଣସି ପ୍ରସିଦ୍ଧ ଉଦ୍ଧତ ପୌରାଣିକ ବ୍ୟକ୍ତି ବା ରାଜର୍ଷି ଚରିତ୍ର ଚିତ୍ରିତ ହୋଇଥାଏ । ଏଥିରେ ପୁରୁଷ ଚରିତ୍ର କମ୍ ଥାଏ ଏବଂ ମହିଳା ଚରିତ୍ର ଅଧିକ ଥା'ନ୍ତି । ଏଥିରେ ଗର୍ଭ, ବିମର୍ଶ ସନ୍ଧି ନ ଥାଏ । ଅର୍ଥାତ୍ ମୁଖ, ପ୍ରତିମୁଖ ଏବଂ ନିର୍ବହଣ ସନ୍ଧି ସ୍ଥାନ ପାଇଥାଏ । ଏଥିରେ ବୀର, ରୌଦ୍ର, ବୀଭତ୍ସ, ଅଦଭୁତ , କରୁଣ, ଭୟାନକ ରସ ଥାଏ । ବ୍ୟାୟୋଗରେ ଯୁଦ୍ଧର ବର୍ଣ୍ଣନା ରହେ । ହେଲେ ଏହି ଯୁଦ୍ଧ ସ୍ତ୍ରୀ ପ୍ରାପ୍ତି ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ଗୋଟିଏ ଦିନର କଥା ଏଥିରେ ସ୍ଥାନ ପାଇଥାଏ । ଏହା ଏକ ଅଙ୍କବିଶିଷ୍ଟ । କୌଣସି ବୃତ୍ତି ଏଥିରେ ନ ଥାଏ । ଭାସ ମଧ୍ୟ କେତେକ ବ୍ୟାୟୋଗ ରଚନା କରିଛନ୍ତି । 'ସାଂଗନ୍ଧିକାହରଣ' ଏକ ଶ୍ରେଷ୍ଠ ବ୍ୟାୟୋଗ ।

**ସମବକାର -** ଏହାର ଇତିବୃତ୍ତ ଇତିହାସ ବା ପୁରାଣ ପ୍ରସିଦ୍ଧ କଥା । ଏଥିରେ ଦେବତା ଏବଂ ଅସୁରମାନଙ୍କ କଥା ଥାଏ । ବିମର୍ଶକୁ ଛାଡ଼ି ଅନ୍ୟ ଚାରି ସନ୍ଧି ଥାଏ । କୈଶିକୀ ବୃତ୍ତିକୁ ଛାଡ଼ି ଅନ୍ୟ ତିନୋଟି ବୃତ୍ତିର ସମାବେଶ ଘଟିଥାଏ । ସମବକାର ହେଉଛି

ତିନିଅଙ୍କ ବିଶିଷ୍ଟ । ଏଥିରେ ଉଦାତ୍ତ ଦେବତା ତଥା ଦାନବ ଚରିତ୍ର ଅଂଶଗ୍ରହଣ କରିଥାନ୍ତି । ସମୁଦ୍ରମନ୍ଥନ ହେଉଛି ଏକ ସାର୍ଥକ ସମବକାର । ବୀରରସ ହେଉଛି ଏହାର ଅଙ୍ଗୀରସ ।

ଏଥିରେ ବିନ୍ଦୁନାମକ ଅର୍ଥପ୍ରକୃତି ନ ଥାଏ । ପ୍ରତ୍ୟେକ ଅଙ୍କରେ ତିନିପ୍ରକାର କପଟ, ତିନି ପ୍ରକାର ଶୃଙ୍ଗାର, ତିନିଥର ପାତ୍ରରେ ବିଦ୍ରବ ସ୍ଥାନ ପାଇଥାଏ । ପ୍ରଥମ ଅଙ୍କରେ ୧୨ ନାଳିକା, ଦ୍ୱିତୀୟ ଅଙ୍କରେ ୪ ନାଳିକା, ତୃତୀୟ ଅଙ୍କରେ ୨ ନାଳିକା ରହେ । ନାଳିକା କହିଲେ ଦୁଇଘଡ଼ିକୁ ବୁଝାଇଥାଏ । ତିନିପ୍ରକାର ଶୃଙ୍ଗାର ହେଉଛି - ଧର୍ମଶୃଙ୍ଗାର, ଅର୍ଥଶୃଙ୍ଗାର ଏବଂ କାମଶୃଙ୍ଗାର । ତିନିପ୍ରକାର କପଟ ହେଉଛି - ସ୍ୱାଭାବିକ, କୃତ୍ରିମ ଏବଂ ଦୈବଜ । ତିନି ପ୍ରକାର ବିଦ୍ରବ ହେଉଛି - ଚେତନ, ଅଚେତନ ଏବଂ ଚେତନାବଚେତନ । ଚେତନା ହେଉଛି ମଣିଷ, ଅଗ୍ନି ହେଉଛି ଅଚେତନ ଏବଂ ଚେତନାବଚେତନ ହେଉଛି ହାତୀ ।

**ବୀଥୀ** - କୀଥ୍‌ଙ୍କ ମତରେ 'ବୀଥୀ' ହେଉଛି 'ମାଳା' । ଏଥିରେ କେତେକ ରସ ମାଳାପରି ଗୁନ୍ଥାଯାଇଛି । ଏଣୁ ଏହାକୁ ବୀଥୀ ବା ମାଳା କୁହାଯାଇଛି । ଏଥିରେ ଗୋଟିଏ ଅଙ୍କ ଥାଏ । ଆକାଶଭାଷିତ ଦ୍ୱାରା ଏହା କାର୍ଯ୍ୟନିର୍ବାହ କରିଥାଏ, ଦୁଇଟି ସନ୍ଧି ମୁଖ ଏବଂ ନିର୍ବହଣ ଥାଏ । ସବୁ ଅର୍ଥପ୍ରକୃତି ରହିଥାଏ । ଶୃଙ୍ଗାର ରସ ଥାଏ, ମାତ୍ର ତାହାର ପୂର୍ଣ୍ଣ ପରିପ୍ରକାଶ ଘଟି ନ ଥାଏ । ଅନ୍ୟ ରସ ମଧ୍ୟ ପ୍ରାସଙ୍ଗିକତା ଲାଭ କରିଥାଏ । କୈଶିକୀ ବୃତ୍ତି ସ୍ଥାନ ଗ୍ରହଣ କରିଥାଏ ।

ବୀଥୀରେ ଗୋଟିଏ ବା ଦୁଇଟି ପାତ୍ର ଥାଏ । ଏଥିରେ ତେରଟି ଅଙ୍ଗ ସଂଯୁକ୍ତ ହୋଇଥାଏ ; ଯଥା - ଉଦ୍‌ଘାତ୍ୟକ, ଅବଲଗୀତ, ପ୍ରପଞ୍ଚ, ତ୍ରିଗତ, ଛଳ, ବାକେଲି, ଅଧୀବଳ, ଗଣ୍ଡ, ଅବସ୍ୟାନ୍ଦିତ, ନାଳିକା, ଅସତ୍‌ପ୍ରଳାପ, ବ୍ୟାହାର ଏବଂ ମୃଦବ । କୋହଳଙ୍କ ମତରେ ଲାସ୍ୟାଙ୍ଗ ଐଚ୍ଛିକ, କିନ୍ତୁ ଭୋଜରାଜ ଏହାକୁ ଅନିବାର୍ଯ୍ୟ ବୋଲି କହିଛନ୍ତି । ବିଶ୍ୱନାଥଙ୍କ ମତରେ ବୀଥୀର ଏକମାତ୍ର ଉଦାହରଣ ହେଉଛି ମାଳବିକା (ମାଳାବିକାଗ୍ନିମିତ୍ର ନୁହେଁ) ।

**ଅଙ୍କ** - ଅଙ୍କକୁ ମଧ୍ୟ ଉତ୍‌ସୃଷ୍ଟିକାଙ୍କ କୁହାଯାଏ । ଏହା ଅନ୍ୟ ରୂପକଠାରୁ ଭିନ୍ନ । ଏଥିରେ ସୃଷ୍ଟି ଉତ୍‌କ୍ରାନ୍ତ ବା ବିପରୀତ ହୋଇଥାଏ । ଏଣୁ ଏହାକୁ ଉତ୍‌ସୃଷ୍ଟିକାଙ୍କ କୁହାଯାଏ । ଇତିହାସପ୍ରସିଦ୍ଧ କଥାବସ୍ତୁ ଏଥିରେ ସ୍ଥାନ ପାଇଥାଏ । କବି ନିଜସ୍ୱ କଳ୍ପନା ବଳରେ ଏହାକୁ ପରିବର୍ତ୍ତିତ ବା ପରିବର୍ଦ୍ଧିତ କରିଥାଏ । ଏହାର ନାୟକ ବା ଅନ୍ୟପାତ୍ର ସାଧାରଣ ବ୍ୟକ୍ତି । ଏଥିରେ ସନ୍ଧି, ବୃତ୍ତି, ଅଙ୍କ ମଧ୍ୟ ଥାଏ । ମୁଖ ଏବଂ ନିର୍ବହଣ ସନ୍ଧି ଥାଏ । ଭରତ କେବଳ ଭାରତୀ ବୃତ୍ତିକୁ ସ୍ୱୀକାର କରିଛନ୍ତି ।

ଧନଞ୍ଜୟ, ବିଶ୍ୱନାଥଙ୍କ ମତରେ ଏହା ଏକ ଅଙ୍କବିଶିଷ୍ଟ, ଶାରଦାତନୟଙ୍କ ମତରେ ଏକ ଏକ ବିଶିଷ୍ଟ, କୋହଳଙ୍କ ମତରେ ଏହା ଦୁଇ ଅଙ୍କବିଶିଷ୍ଟ ଏବଂ ଆଂଜନେୟଙ୍କ ମତରେ ଏହା ତିନି ଅଙ୍କବିଶିଷ୍ଟ । ଏହାର ସ୍ଥାୟୀ ରସ କରୁଣ । ନାରୀମାନଙ୍କ ବିଳାପ,

ଜୟ ପରାଜୟ, ପାତ୍ରମାନଙ୍କର ବାକ୍‌ଯୁଦ୍ଧ ସ୍ଥାନ ପାଇଥାଏ । ମାତ୍ର ଏସବୁ ରଙ୍ଗମଞ୍ଚରେ ପ୍ରଦର୍ଶିତ ହୁଏ ନାହିଁ । ବିଶ୍ୱନାଥଙ୍କ ମତରେ 'ଶର୍ମିଷ୍ଠା-ଯଯାତି' ହେଉଛି ଶ୍ରେଷ୍ଠ ଉଦାହରଣ । ଶାରଦାତନୟଙ୍କ ମତରେ ଏଥିରେ ଯୁଦ୍ଧ, ବିଳାପ ଥିଲେ ମଧ୍ୟ ଅଙ୍କ ସଦାସର୍ବଦା ସୁଖାନ୍ତକ ହେବା ବିଧେୟ ।

**ଇହାମୃଗ** - ଏହାର କଥାବସ୍ତୁ ଇତିହାସ ପ୍ରସିଦ୍ଧ, ପ୍ରଖ୍ୟାତ ଏବଂ କଳ୍ପନା ମିଶ୍ରିତ । ଏଥିରେ ଚାରୋଟି ଅଙ୍କ ଥାଏ ଏବଂ ତିନୋଟି ସନ୍ଧି ; ଯଥା - ମୁଖ, ପ୍ରତିମୁଖ, ନିର୍ବହଣ ସ୍ଥାନ ପାଇଥାଏ । ଏହାର ନାୟକ ତଥା ପ୍ରତିନାୟକ ପ୍ରଖ୍ୟାତ ଇତିହାସପ୍ରସିଦ୍ଧ ଧୀରୋଦାତ୍ତ ମନୁଷ୍ୟ ଅଥବା ଦେବତା । ପ୍ରତିନାୟକ ପ୍ରଚ୍ଛନ୍ନ ଭାବେ ପାପାଚରଣ କରିଥାଏ । ପ୍ରତିନାୟକ ଦିବ୍ୟନାରୀକୁ ଅପହରଣ କରିଥାଏ, ଯିଏ ତାକୁ ପ୍ରେମ କରେ ନାହିଁ । ଦିବ୍ୟନାୟକର ନାୟିକାକୁ ପ୍ରତିନାୟକ ଅପହରଣ କରିଥିବାରୁ ସଂଘର୍ଷ ହୁଏ । ତେବେ ବାସ୍ତବରେ ଯୁଦ୍ଧ ସଂଘଟିତ ହୋଇ ନ ଥାଏ । ଏହାକୁ ଏଡ଼ାଇ ଦିଆଯାଇଥାଏ । ପ୍ରତିନାୟକର ବଧ ହୁଏ ନାହିଁ ।

କୌଶିକୀ ବୃତ୍ତିକୁ ଛାଡ଼ି ଅନ୍ୟ ତିନୋଟି ବୃତ୍ତି ସ୍ଥାନ ଲାଭ କରିଥାଏ । ବିଶ୍ୱନାଥଙ୍କ ମତରେ ଏଥିରେ ଗୋଟିଏ ଅଙ୍କ ଥାଏ । ନାୟକ ଦେବତା । ମାତ୍ର ଅନ୍ୟମାନଙ୍କ ମତରେ ନାୟକ ସଂଖ୍ୟା ଛ' । ବିଶ୍ୱନାଥ ଇହାମୃଗର ଉଦାହରଣ 'କୁସୁମଶେଖର ବିଜୟ'ରେ ଦେଇଛନ୍ତି । ଧନଞ୍ଜୟଙ୍କ ମତରେ ଇହାମୃଗର ଅର୍ଥ କାରଣ । ଏଠି ନାୟକ ମୃଗ ସମାନ କୌଣସି ଅଲଭ୍ୟ ନାୟିକାକୁ ପାଇବାକୁ ଇଚ୍ଛା କରିଥାଏ । ଏଣୁ ଏହାର ନାମ ଇହାମୃଗ । ପ୍ରତିନାୟକ ଏଥିରେ ରହୁଥିବାରୁ କିଛି ଅନୁଚିତ କାର୍ଯ୍ୟ ସ୍ଥାନ ପାଇଥାଏ ।

## ଉପରୂପକ

ଉପରୂପକର ଧର୍ମ ହେଲା ଦର୍ଶକ ମନରେ ଭାବର ଜାଗୃତି କରାଇବା । ଏଥିପାଇଁ ଏହାକୁ ନୃତ୍ୟ କହନ୍ତି । ନାଟ୍ୟଶାସ୍ତ୍ରରେ ଏହାର ଉତ୍ପତ୍ତି ବିଷୟରେ ଉଲ୍ଲେଖ ନାହିଁ । ଏଣୁ ଏହାର ଉତ୍ପତ୍ତି ବିଷୟରେ କହିବା କଷ୍ଟକର ବ୍ୟାପାର । ତଥାପି ନାଟ୍ୟଶାସ୍ତ୍ରରେ ଏଭଳି କିଛି ଉଦାହରଣ ରହିଛି, ଯାହାକୁ ଆଧାର କରି ଉପରୂପକର କୃତିତ୍ୱ ଆମେ ଭରତଙ୍କୁ ଦେଇପାରିବା । ଉପରୂପକର ଗୋଟିଏ ଭେଦ ହେଉଛି 'ତୋଟକ', ଯାହାର ଲକ୍ଷଣ ହର୍ଷ ପ୍ରଦାନ କରିଛନ୍ତି । ଏଣୁ କୁହାଯାଇପାରେ, ହର୍ଷଙ୍କ ସମୟ ପୂର୍ବରୁ ଉପରୂପକର ସ୍ଥିତି ଥିଲା । ନାଟ୍ୟଶାସ୍ତ୍ରର ୪ର୍ଥ ଅଧ୍ୟାୟର ଅନ୍ତିମ ଭାଗ ଉପରେ ଅଭିନବଗୁପ୍ତ ଯେଉଁ ଟୀକା ଦେଇଛନ୍ତି, ସେଥିରେ ଉପରୂପକ ସହିତ କୋହଳଙ୍କ ସମ୍ବନ୍ଧ ଥିଲା ବୋଲି ଜଣାଯାଏ । ଏଣୁ କୋହଳଙ୍କୁ ଉପରୂପକର ଜନ୍ମଦାତା ଭାବେ ଗ୍ରହଣ କରାଯାଇପାରେ । ଆଚାର୍ଯ୍ୟ ହେମଚନ୍ଦ୍ର ମଧ୍ୟ 'କାବ୍ୟାନୁଶାସନ'ରେ ଏହି ମତକୁ ପୁଷ୍ଟ କରିଛନ୍ତି । ଧନିକଙ୍କ 'ଦଶରୂପକାବଲୋକ' ଗ୍ରନ୍ଥରେ ଉପରୂପକ ଏବଂ ତାର ସଂଖ୍ୟାର ସଙ୍କେତ ଦେଖିବାକୁ

ମିଳେ । ଏଥିରେ ଉପରୂପକ ସଂଖ୍ୟା ସାତ ଏବଂ ଏସବୁ 'ଭାଣ' ଶ୍ରେଣୀର ବୋଲି କୁହାଯାଇଛି ।

ଅଗ୍ନିପୁରାଣରେ ୧୭ ଉପରୂପକର ସୂଚନା ମିଳୁଛି । ଏହା ପରେ ଅଭିନବଗୁପ୍ତ ନାଟ୍ୟଶାସ୍ତ୍ରର ଟୀକାରେ ଉପରୂପକର ଉଲ୍ଲେଖ କରିଛନ୍ତି । ଭୋଜଙ୍କ 'ଶୃଙ୍ଗାର ପ୍ରକାଶ'ରେ ପଦ୍ୟରେ ୧୪ ଉପରୂପକର ଲକ୍ଷଣ ପ୍ରଦତ୍ତ ହୋଇଛି । ଶାରଦାତନୟଙ୍କ 'ଭାବପ୍ରକାଶନ'ର କିଛି ଶ୍ଳୋକ ସହିତ ଏହା ମେଳ ଖାଉଛି । ଭୋଜ ମଧ୍ୟ ଅନ୍ୟ କୌଣସି ଭରତଙ୍କ ଶ୍ଳୋକକୁ ଆଧାର କରି ଉପରୂପକ ସଂଖ୍ୟା ୧୪ ବୋଲି କହିଛନ୍ତି । ଅଗ୍ନିପୁରାଣରେ ଉପରୂପକର ଯେଉଁ ନାମ ରହିଛି, ତାହା ମଧ୍ୟ ବେଶି ପ୍ରାଚୀନ ନୁହେଁ । କାରଣ ଏହି ପୁରାଣରେ ଧ୍ୱନ୍ୟାଲୋକଙ୍କ ଉଦାହରଣ ସହିତ ଭୋଜଙ୍କ ଶୃଙ୍ଗାର ରସ ସିଦ୍ଧାନ୍ତ ମଧ୍ୟ ଅଛି । ତେଣୁ ଜଣାଯାଉଛି, ଯେଉଁ ସମୟରେ ନାଟ୍ୟଶାସ୍ତ୍ର ରଚନା ହୋଇଛି, ସେତେବେଳେ ଉପରୂପକ ରଚିତ ହୋଇ ନାହିଁ । ଧନିକଙ୍କ ସମୟର ପୂର୍ବରୁ ଏହାର କଳ୍ପନା କରାଯାଇଛି ।

ସମ୍ଭବତଃ କୋହଳ ଉପରୂପକର ପରିକଳ୍ପନା ପ୍ରଥମେ କରିଛନ୍ତି । କବିରାଜ ବିଶ୍ୱନାଥ ୧୮ ଉପରୂପକର ବର୍ଣ୍ଣନା କରିଛନ୍ତି ; ଯଥା - ନାଟିକା, ତ୍ରୋଟକ, ଗୋଷ୍ଠୀ, ସଟ୍ଟକ, ନାଟ୍ୟରାସକ, ପ୍ରସ୍ଥାନକ, ଉଲ୍ଲାସ୍ୟ, କାବ୍ୟ, ପ୍ରେଖଣ, ରାସକ, ସଂଲାପକ, ଶ୍ରୀଗଦିତ, ଶିଳ୍ପକ, ବିଳାସିକା, ଦୁର୍ମଲ୍ଲିକା, ପ୍ରକରଣିକା, ହଲ୍ଲୀଶ ଏବଂ ଭାଣିକା । ଶାରଦାତନୟ ଉପରୂପକର ସଂଖ୍ୟା ୨୦ ବୋଲି ମତ ଦେଇଛନ୍ତି ଯଥା - ତୋଟକ, ନାଟିକା, ଗୋଷ୍ଠୀ, ସଲ୍ଲାପକ, ଶିଳ୍ପକ, ଡୋମ୍ବୀ, ଶ୍ରୀଗଦିତ, ଭାଣ, ଭାଣିକା, ପ୍ରସ୍ଥାନ, କାବ୍ୟ, ପ୍ରେଖଣ, ରାସକ, ନାଟ୍ୟରାସକ, ଉଲ୍ଲୋପ୍ୟକ, ହଲ୍ଲୀସକ, ଦୁର୍ମଲ୍ଲିକା, ମଲ୍ଲିକା, କଳ୍ପବଲ୍ଲୀ ଏବଂ ପାରିଜାତକ । ଉଭୟଙ୍କର ୧୮ ନାମର ସାମ୍ୟ ରହିଛି । ବିଶ୍ୱନାଥ ୩ଟି ନୂଆ ଭେଦ ରଚନା କରିଥିବାବେଳେ, ଶାରଦାତନୟ ୫ଟି ନୂଆଭେଦ ଉଲ୍ଲେଖ କରିଛନ୍ତି । ଏହିପରି ଦୁଇ ଆଚାର୍ଯ୍ୟଙ୍କ ସୂଚୀ ମିଳାଇଲେ ଉପରୂପକର ଭେଦ ୨୩ ହେବ । ଅଗ୍ନିପୁରାଣର ଉଲ୍ଲେଖ ହୋଇଥିବା ୧୭ ଉପରୂପକ ହେଉଛି - ତୋଟକ, ନାଟିକା, ସଟ୍ଟକ, ଶିଳ୍ପକ, କର୍ଣ୍ଣା, ଦୁର୍ମଲ୍ଲିକା, ପ୍ରସ୍ଥାନ, ଭାଣିକା, ଭାଣୀ, ଗୋଷ୍ଠୀ, ହଲ୍ଲୀଶକ, କାବ୍ୟ, ଶ୍ରୀଗଦିତ, ନାଟ୍ୟରାସକ, ରାସକ, ଉଲ୍ଲାପ୍ୟକ ଓ ପ୍ରେକ୍ଷଣ ।

**ନାଟିକା** - ଭରତ ନାଟିକା ଉପରେ କିଛିଟା ଅଧିକା ଗୁରୁତ୍ୱ ଦେବାକୁ ଯାଇ ଏହାର ଲକ୍ଷଣ ବର୍ଣ୍ଣନା କରିଛନ୍ତି । ନାଟିକା କବିକଳ୍ପିତ । ଏହାର କଥା ପ୍ରକରଣର ସମାନଧର୍ମୀ । ଧନଞ୍ଜୟଙ୍କ ମତରେ ନାଟିକାର କଥାବସ୍ତୁ ପ୍ରକରଣରୁ ଆସିଛି । ନାଟିକାର ନାୟକ ପ୍ରଖ୍ୟାତ ବା ଇତିହାସପ୍ରସିଦ୍ଧ । ଏଥିରେ ସ୍ତ୍ରୀ ପାତ୍ରର ଆଧିକ୍ୟ ଦେଖାଯାଏ । ଏଥିରେ ଦୁଇଜଣ ନାୟିକା ଥାଆନ୍ତି । ପ୍ରଥମଟି ଦେବୀ, ମହାରାଣୀ ବା ପ୍ରଗଲ୍‌ଭାପ୍ରକୃତିର । ଦ୍ୱିତୀୟଟି ନିମ୍ନଶ୍ରେଣୀର ହେଲେ ମଧ୍ୟ ଅନ୍ତଃପୁର ମଣ୍ଡନ କରିଥାଏ । ନାଟିକାରେ ଗୀତ, ସଙ୍ଗୀତ

ଏବଂ ନୃତ୍ୟର ସମାଗମ ହୋଇଥାଏ । ନାଟିକାରେ ୪ଟି ଅଙ୍କ ଥାଏ । ଏହାର ଅଙ୍ଗୀରସ ଶୃଙ୍ଗାର । କୈଶିକୀ ବୃତ୍ତି ସ୍ଥାନ ପାଇଥାଏ ।

**ପ୍ରକରଣିକା** - ଏହାର ନାୟକ ବଣିକ ଶ୍ରେଣୀର । ନାଟିକାର ଅନ୍ୟ ସବୁ ଲକ୍ଷଣ ଏଥିରେ ଦେଖାଯାଏ । କେତେକ ବିଦ୍ୱାନ୍ ସଂକୀର୍ଣ୍ଣ ବା ସଂକର ଉପରୂପକକୁ ନାଟିକା ବା ପ୍ରକରଣିକା କୁହାଯାଏ ବୋଲି ମତ ଦେଇଛନ୍ତି । ପ୍ରକରଣ ଏବଂ ପ୍ରକରଣିକା ମଧ୍ୟରେ ବିଶେଷ ଫରକ ଦେଖାଯାଏନି । ଧନିକ ପ୍ରକରଣିକାକୁ ଉପରୂପକରେ ଏକ ଅଲଗା ଭେଦ ଭାବରେ ସ୍ୱୀକାର କରନ୍ତି ନାହିଁ । ଶାରଦାତନୟ ମଧ୍ୟ ତାଙ୍କୁ ସମର୍ଥନ କରନ୍ତି । ଏଣୁ ପ୍ରକରଣ ଏବଂ ପ୍ରକରଣିକା ଭେଦ କରିବା ଯୁକ୍ତିଯୁକ୍ତ ନୁହେଁ ।

**ସଟ୍ଟକ** - ବିଶ୍ୱନାଥ ଏବଂ ରାମଚନ୍ଦ୍ର-ଗୁଣଚନ୍ଦ୍ର ସଟ୍ଟକର ଉଲ୍ଲେଖ କରିଛନ୍ତି । ଶାରଦାତନୟ ଏହାକୁ ନାଟିକାର ଏକ ଭେଦଭାବେ ମାନନ୍ତି । ଏକ ସ୍ୱତନ୍ତ୍ର ରୂପେ ସେ ସ୍ୱୀକାର କରନ୍ତି ନାହିଁ । ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସଟ୍ଟକ ପ୍ରାକୃତ ଭାଷାରେ ଲେଖାଯାଇଥାଏ । ସଂସ୍କୃତର ଆଦୌ ପ୍ରୟୋଗ ହୋଇ ନ ଥାଏ । ଏଥିରେ ଅଦ୍‌ଭୁତ ରସର ପ୍ରାଧାନ୍ୟ ଥାଏ । ପ୍ରବେଶକ ଏବଂ ବିଷ୍କମ୍ଭକ ନ ଥାଏ । ଅଙ୍କର ନାମ ଯବନିକା । ରାଜଶେଖରଙ୍କ 'କର୍ପୂରମଞ୍ଜରୀ' ସଟ୍ଟକର ଶ୍ରେଷ୍ଠ ଉଦାହରଣ ।

**ତ୍ରୋଟକ** - ବିଶ୍ୱନାଥ ତ୍ରୋଟକ କହୁଥିବାବେଳେ ଶାରଦାତନୟ ତୋଟକ କହିଛନ୍ତି । ଏହା ଏକ ପରିବର୍ତ୍ତିତ ରୂପ । ଏଥିରେ ସାତ, ଆଠ, ନ ବା ପାଞ୍ଚ ଅଙ୍କ ଥାଏ । ଏହା ଦେବତା ତଥା ମନୁଷ୍ୟ ଆଶ୍ରିତ । ପ୍ରତିଟି ଅଙ୍କରେ ବିଦୂଷକ ଉପସ୍ଥିତ ରହନ୍ତି । ପ୍ରଧାନ ରସ ହେଉଛି ଶୃଙ୍ଗାର । ଶାରଦାତନୟ ଭିନ୍ନ ଭିନ୍ନ ଅଙ୍କର ତୋଟକର ଉଦାହରଣ ଦେଇଛନ୍ତି ; ଯଥା - ମେନକା-ନହୁଷ (ନ'ଅଙ୍କ), ମଦଲେଖା (ଆଠ ଅଙ୍କ), ସ୍ତମ୍ଭିତ ରମ୍ଭକ (ସାତ ଅଙ୍କ) । ପାଞ୍ଚଅଙ୍କର ତୋଟକ 'ବିକ୍ରମୋର୍ବଶୀୟ' ।

**ଗୋଷ୍ଠୀ** - ଗୋଷ୍ଠୀର ଲକ୍ଷଣ ବିଶ୍ୱନାଥ ଏବଂ ଶାରଦାତନୟ ଉଭୟ ପ୍ରଦାନ କରିଛନ୍ତି । ଏଥିରେ ନ' ବା ଦଶ ପ୍ରାକୃତ ପୁରୁଷ ଚରିତ୍ର ଏବଂ ପାଞ୍ଚ ବା ଛ' ସ୍ତ୍ରୀ ଚରିତ୍ର ଥାଆନ୍ତି । ଏଥିରେ ଉଦାତ୍ତ ବଚନର ପ୍ରୟୋଗ ଆଦୌ ହୁଏନି । କୈଶିକା ବୃତ୍ତି ପ୍ରାଧାନ୍ୟ ଥାଏ । ମୁଖ, ପ୍ରତିମୁଖ ଏବଂ ନିର୍ବହଣ ସନ୍ଧିର ଯୋଜନା କରାଯାଇଥାଏ । ଏହାର ରସ ହେଉଛି ଶୃଙ୍ଗାର । ଏହା ଏକ ଅଙ୍କବିଶିଷ୍ଟ । କଥାବସ୍ତୁ କବିକଳ୍ପିତ 'ରେବତକ-ମଦନିକା' ହେଉଛି ଗୋଷ୍ଠୀର ଉଦାହରଣ ।

**ରାସକ** - ରାସକ ଏବଂ ନାଟ୍ୟରାସକ ମଧ୍ୟରେ ପ୍ରାଚୀନ ଆଚାର୍ଯ୍ୟମାନଙ୍କର ବହୁ ମତଭେଦ ଦେଖାଯାଏ । ଭୋଜ, ଶାରଦାତନୟ, ବିଶ୍ୱନାଥ ଏବଂ ରାମଚନ୍ଦ୍ର-ଗୁଣଚନ୍ଦ୍ର ଅଲଗା ଅଲଗା ମତ ଦେଇଛନ୍ତି । ଏହା ଭିନ୍ନ ଭିନ୍ନ ରୀତିର ନୃତ୍ୟ । ଶୃଙ୍ଗାର ପ୍ରକାଶ ଗ୍ରନ୍ଥରେ ନୃତ୍ୟ-ବିଷୟକ ଯେତେ ଶ୍ଳୋକ ଦେଖାଯାଏ, ଶାରଦାତନୟ ସେସବୁ ଗ୍ରହଣ କରିନେଇଛନ୍ତି ।

ଭୋଜ ଏବଂ ଶାରଦାତନୟଙ୍କ ମତାନୁସାରେ ରାସକ ହେଉଛି ଏକ ବିଶେଷ ପ୍ରକାର ନୃତ୍ୟ । ଏହା ୧୬, ୧୨ ବା ୮ ସ୍ତ୍ରୀମାନଙ୍କଦ୍ୱାରା ପ୍ରସ୍ତୁତ କରାଯାଇଥାଏ । ଏହି ନୃତ୍ୟର ଚାରୋଟି ରୂପ ଦେଖାଯାଏ ; ଯଥା - ପିଣ୍ଡୀ, ଶୃଙ୍ଖଳା, ମେଧକ ଏବଂ ଲତା । ରାସକର ଶେଷରେ ଶୁଭବଚନ ସ୍ଥାନ ପାଇଥାଏ । ବିଶ୍ୱନାଥଙ୍କ ମତରେ ଏଥିରେ ୫ଟି ପାତ୍ର ଥାଏ । ଏଥିରେ ମୁଖ, ନିର୍ବହଣ ସନ୍ଧି ସ୍ଥାନ ପାଇଥାଏ । ଏହା ଭାରତୀ ତଥା କୈଶିକୀ ବୃତ୍ତିଯୁକ୍ତ । ଏହା ଏକ ଅଙ୍କବିଶିଷ୍ଟ । ରାସକର ନାୟକ ମୂର୍ଖ ଏବଂ ନାୟିକା ପ୍ରସିଦ୍ଧ ।

**ନାଟ୍ୟରାସକ** - ଭୋଜ ତଥା ଶାରଦାତନୟଙ୍କ ମତାନୁସାରେ ନାଟ୍ୟରାସକ ଏକ ବିଶେଷ ପ୍ରକାର ନୃତ୍ୟ । ଏଥିରେ ବିଭିନ୍ନ ମୁଦ୍ରା, ଭାବଭଙ୍ଗୀ ଏବଂ ନୃତ୍ୟ ସ୍ଥାନ ପାଇଥାଏ । ଭାବପ୍ରକାଶରେ ନାଟ୍ୟରାସକର କେତେକ ଭେଦ ବର୍ଣ୍ଣିତ । ବିଶ୍ୱନାଥ ଏହାକୁ ଅଭିନୟାତ୍ମକ ଉପରୂପକ ଭାବେ ସ୍ୱୀକାର କରନ୍ତି । ବିଶ୍ୱନାଥଙ୍କ ମତରେ ଏହା ଏକ ଅଙ୍କବିଶିଷ୍ଟ । ଏଥିରେ ରୂପ ଏବଂ ତାଳର ଆଧିକ୍ୟ ଥାଏ । ଶୃଙ୍ଗାର ଏବଂ ହାସ୍ୟ ଏହାର ପ୍ରଧାନ ରସ । ଏହାର ନାୟକ ଉଦାତ୍ତ ଏବଂ ନାୟିକା ବାସକସଜ୍ଜା । ଏଥିରେ ମୁଖ, ନିର୍ବହଣ ସନ୍ଧିର ଯୋଜନା ହୋଇଥାଏ । ଦଶ ଲାସ୍ୟାଙ୍ଗ ରହିଥାଏ । ଦୁଇ ସନ୍ଧିବିଶିଷ୍ଟ ନାଟ୍ୟରାସକ ନର୍ମବତୀ ଏବଂ ଚାରିସନ୍ଧିବିଶିଷ୍ଟ ନାଟ୍ୟରାସକ 'ବିଳାସବତୀ' ।

**ପ୍ରସ୍ଥାନ ବା ପ୍ରସ୍ଥାନକ** - ଏଥିରେ ଅଧିକ ସଙ୍ଗୀତ ଏବଂ ନୃତ୍ୟ ଥାଏ । ପ୍ରଥମ ଅନୁରାଗ, ମାନ, ପ୍ରବାସବର୍ଣ୍ଣନ, ବସନ୍ତବର୍ଣ୍ଣନ ଆଦି ସ୍ଥାନ ପାଇଥାଏ । ଏହା ହେଲା ଭୋଜ ଏବଂ ରାମଚନ୍ଦ୍ର-ଗୁଣଚନ୍ଦ୍ରଙ୍କ ମତ । ମାତ୍ର ବିଶ୍ୱନାଥଙ୍କ ମତରେ, ନାୟକ ହେଉଛି ଦାସ, ଉପନାୟକ ନାୟକଠାରୁ ହୀନ, ନାୟିକା ହେଉଛି ଦାସୀ । କୈଶିକୀ ଏବଂ ଭାରତୀ ବୃତ୍ତିର ସଂଯୋଜନ ଘଟିଥାଏ । ମୁଖ, ନିର୍ବହଣ ସନ୍ଧି ରହିଥାଏ । ପ୍ରସ୍ଥାନରେ ଦୁଇଟି ଅଙ୍କ ରହେ । ଲୟ, ତାଳ ଏବଂ ବିଳାସ ଅଧିକ ଥାଏ । ଉଦାହରଣ ହେଉଛି 'ଶୃଙ୍ଗାର ତିଳକ' । ବିଶ୍ୱନାଥ ଏହାକୁ ଅଭିନୟାତ୍ମକ ବୋଲି କହିଛନ୍ତି ।

**ଉଲ୍ଲାପ୍ୟ ବା ଉଲ୍ଲୋପ୍ୟକ** - ସାହିତ୍ୟ ଦର୍ପଣରେ ଏହାର ନାମ ଉଲ୍ଲାପ୍ୟ ଥିବାବେଳେ 'ଭାବପ୍ରକାଶନ'ରେ ଉଲ୍ଲୋପ୍ୟକ ରହିଛି । ଶାରଦାତନୟଙ୍କ ମତରେ, ଏକ ବିଶେଷ ପ୍ରକାରର ଗୀତ ଏଥିରେ ସ୍ଥାନ ପାଇଥାଏ, ଯାହାକୁ ଉଲ୍ଲୋପ୍ୟକ କୁହାଯାଏ । ଏହାର ନାୟକ ଧୀରୋଦାତ୍ତ ଏବଂ ଦିବ୍ୟ । ଏହା ଏକ ଅଙ୍କବିଶିଷ୍ଟ । ଏଥିରେ ୨୭ଟି ଅଙ୍ଗ ଥାଏ । ଉଲ୍ଲାପ୍ୟରେ ହାସ୍ୟ, କରୁଣ ଏବଂ ଶୃଙ୍ଗାର ରସ ସ୍ଥାନ ପାଇଥାଏ । ସଂଗ୍ରାମ ମଧ୍ୟ ରହିଥାଏ । ଏଥିରେ ଚାରୋଟି ନାୟିକା ରହିଥାନ୍ତି । 'ଦେବୀ ମହାଦେବ' ହେଉଛି ଉଲ୍ଲାପ୍ୟର ଉଦାହରଣ ।

**କାବ୍ୟ** - ଭୋଜଙ୍କ ମତରେ କାବ୍ୟ ଦୁଇ ପ୍ରକାରର ; ଯଥା - ଶୁଦ୍ଧ ଏବଂ ଚିତ୍ର । ଶାରଦାତନୟ ଦୁଇ ପ୍ରକାର ଭେଦ ଉଲ୍ଲେଖ କରିଛନ୍ତି । ଗୋଟିଏର 'ଗୌଡ଼ବିଜୟ'

ପ୍ରତିନିଧିତ୍ୱ କଲାବେଳେ ଅନ୍ୟଟିର ପ୍ରତିନିଧିତ୍ୱ 'ସୁଗ୍ରୀବକେଳନ' କରୁଛି । ଭୋଜ ଏବଂ ଶାରଦାତନୟଙ୍କ ମତକୁ ମିଳାଇ ଦେଲେ କାବ୍ୟ ଚାରି ପ୍ରକାର ହେଉଛି । ବିଶ୍ୱନାଥଙ୍କ ମତରେ ଏହା ଏକ ଅଙ୍କବିଶିଷ୍ଟ । ଏଥିରେ ହାସ୍ୟରସ ବ୍ୟାପ୍ତିଲାଭ କରିଥାଏ । ନାୟକ ନାୟିକା ଉଦାତ୍ତ । ମୁଖ, ପ୍ରତିମୁଖ, ନିର୍ବହଣ ସନ୍ଧି ସ୍ଥାନ ପାଇଥାଏ । ଉଦାହରଣ ହେଉଛି - 'ଯାଦବୋଦୟ' । ଶାରଦାତନୟଙ୍କ ମତରେ, ଏଥିରେ ହାସ୍ୟ ସହିତ ଶୃଙ୍ଗାର ରସ ଥାଏ । ଚାରୋଟି ବୃତ୍ତି ରହିଥାଏ । ଏହା ଭଗ୍ନନାଳ, ଦ୍ୱିପଦୀ, ଖଣ୍ଡମାତ୍ରା ନାମକ ଗୀତଦ୍ୱାରା ସଂଯୁକ୍ତ । 'ଗୌଡ଼ବିଜୟ' ହେଉଛି ଉଦାହରଣ ।

**ପ୍ରେଖଣ ବା ପ୍ରେକ୍ଷଣକ** - ବିଶ୍ୱନାଥ ଏହାର ନାମ ପ୍ରେଖଣ ରଖିଥିବା ବେଳେ ଶାରଦାତନୟ ଏହାକୁ ପ୍ରେକ୍ଷଣକ ବୋଲି କହିଛନ୍ତି । ଭୋଜ ଏହାକୁ ଦୁଇଭାଗ କରିଛନ୍ତି ; ଯଥା - ନର୍ତ୍ତନକ ଏବଂ ପ୍ରେକ୍ଷଣକ । ବିଶ୍ୱନାଥଙ୍କ ମତରେ ଏହାର ନାୟକ ହୀନ । ଗର୍ଭ, ବିମର୍ଶ ସନ୍ଧି ସ୍ଥାନ ପାଇ ନ ଥାଏ । ଏକ ଅଙ୍କବିଶିଷ୍ଟ । ଏଥିରେ ସୂତ୍ରଧର, ବିଷ୍କମ୍ଭକ, ପ୍ରବେଶକ ନ ଥାଏ । ସବୁ ବୃତ୍ତି ଥାଏ । ନେପଥ୍ୟରେ ନାନ୍ଦୀ, ପ୍ରରୋଚନା ପାଠ କରାଯାଇଥାଏ । ଉଦାହରଣ - ବାଳିବଧ । ଭୋଜ 'କାମଦହନ'ର ଉଦାହରଣ ଦେଇଛନ୍ତି ।

**ସଂଲାପକ ବା ସଲ୍ଲାପକ** - ଏହି ଉପରୂପକର ନାମ ବିଶ୍ୱନାଥ ସଂଲାପକ ଏବଂ ଶାରଦାତନୟ ସଲ୍ଲାପକ ଦେଇଛନ୍ତି । ବିଶ୍ୱନାଥଙ୍କ ମତରେ ଏହା ତିନି ବା ଚାରିଅଙ୍କ ବିଶିଷ୍ଟ । ନାୟକ ପାଖଣ୍ଡୀ । ଶୃଙ୍ଗାର, କରୁଣକୁ ଛାଡ଼ି ଅନ୍ୟ ରସ ଥାଏ । ଏଥିରେ ଛଳ, ସଂଗ୍ରାମ ସ୍ଥାନ ପାଇଥାଏ । କେବଳ ସାତ୍ୱତୀ, ଆରଭଟୀ ବୃତ୍ତି ରହେ । ଉଦାହରଣ - ମାୟାକାପାଳିକ । ଶାରଦାତନୟଙ୍କ ମତାନୁସାରେ, ସଲ୍ଲାପରେ କଥାବସ୍ତୁ ଇତିହାସପ୍ରସିଦ୍ଧ ଅଥବା କବିକଳ୍ପିତ କିମ୍ବା ଦୁଇଟିର ମିଶ୍ରଣ । ଶୃଙ୍ଗାର, ହାସ୍ୟରସ ଏଥିରେ ବର୍ଜିତ । ନାୟକ ପାଖଣ୍ଡୀ । କପଟ, ଯୁଦ୍ଧ, ଅବରୋଧ ଆଦି ଥାଏ । ସାତ୍ୱତୀ ଏବଂ ଆରଭଟୀ ବୃତ୍ତି ଥାଏ । ପ୍ରତିମୁଖକୁ ଛାଡ଼ି ଅନ୍ୟ ଚାରୋଟି ସନ୍ଧି ସ୍ଥାନ ପାଇଥାଏ ।

**ଶ୍ରୀଗଦିତ** - ବିଶ୍ୱନାଥ ଦୁଇପ୍ରକାର ଶ୍ରୀଗଦିତର ବର୍ଣ୍ଣନା ଦେଇଛନ୍ତି । ପ୍ରଥମଟି ଅନ୍ୟତ୍ର ମିଳୁ ନ ଥିବା ବେଳେ ଦ୍ୱିତୀୟଟି ଭୋଜଙ୍କ 'ଶୃଙ୍ଗାରପ୍ରକାଶ'ରେ ମିଳୁଛି । 'ଭାବପ୍ରକାଶନ'ରେ ଦୁଇଟିର ମିଶ୍ରଣ ମିଳୁଛି । ଏହା ଏକ ଅଙ୍କବିଶିଷ୍ଟ । କଥାବସ୍ତୁ ପ୍ରଖ୍ୟାତ । ନାୟକ ପ୍ରସିଦ୍ଧ ତଥା ଧୀରୋଦାତ୍ତ । ନାୟିକା ପ୍ରଖ୍ୟାତ । ଗର୍ଭ, ବିମର୍ଶକୁ ଛାଡ଼ି ଅନ୍ୟ ସନ୍ଧି ଥାଏ । ଶ୍ରୀ ଶବ୍ଦ ତଥା ଭାରତୀ ବୃତ୍ତି ବହୁ ସ୍ଥଳରେ ବର୍ଣ୍ଣିତ । ଏସବୁ ହେଉଛି ବିଶ୍ୱନାଥଙ୍କ ପ୍ରଦତ୍ତ ପ୍ରଥମ ପ୍ରକାର । ବିଶ୍ୱନାଥଙ୍କ ଉଦାହରଣ ହେଉଛି, 'କ୍ରୀଡ଼ାରସାତଳ' । ଦ୍ୱିତୀୟ ପ୍ରକାର ହେଉଛି, ଏଥିରେ ନଟୀ ଲକ୍ଷ୍ମୀ ରୂପରେ ଗୀତ ପାଠ କରିଥାଏ । ଏହା ଏକ ଅଙ୍କ ବିଶିଷ୍ଟ । ଭାରତୀ ବୃତ୍ତି ଥାଏ । ବିଶ୍ୱନାଥ ଦ୍ୱିତୀୟ ପ୍ରକାର କୌଣସି ଉଦାହରଣ ଦେଇ ନାହାନ୍ତି ।

**ଶିଳ୍ପକ** - ଏଥିରେ ଚାରୋଟି ଅଙ୍କ ଏବଂ ଚାରୋଟି ବୃତ୍ତି ଥାଏ । ଶାନ୍ତ ଏବଂ ହାସ୍ୟରସକୁ ଛାଡ଼ି ଅନ୍ୟ ରସ ଥାଏ । ବ୍ରାହ୍ମଣ ନାୟକ, ହୀନପୁରୁଷ ଉପନାୟକ । ଶ୍ମଶାନ ବର୍ଣ୍ଣନା ଥାଏ । ବିଶ୍ୱନାଥଙ୍କ ମତରେ ଏଥିରେ ୨୭ଟି ଅଙ୍ଗ ଥାଏ ; ଯଥା - ଆଶଂସା, ତର୍କ, ସନ୍ଦେହ, ତାପ, ଉଦ୍‌ବେଗ, ପ୍ରସକ୍ତି (ଆସକ୍ତି), ପ୍ରଯତ୍ନ, ଗ୍ରଥନ, ଉତ୍‌କଣ୍ଠା, ଅବହିତ୍‌ଥା, ପ୍ରତିପତ୍ତି, ବିଳାସ, ଆଳସ୍ୟ, ବାଷ୍ପ, ପ୍ରହର୍ଷ, ଆଶ୍ୱାସ, ମୂଢ଼ତା, ସାଧନାନୁଗମ, ଉଚ୍ଛ୍ୱାସ, ବିସ୍ମୟ, ପ୍ରାପ୍ତି, ଲାଭ, ବିସ୍ମୃତି, ସମ୍ଫେଟ, ବୈଶାରଦ୍ୟ, ପ୍ରବୋଧନ ଏବଂ ଚମତ୍କୃତି । ଶାରଦାତନୟ ମଧ୍ୟ ୨୭ ପ୍ରକାର ଭେଦର ନିର୍ଣ୍ଣୟ କରିଛନ୍ତି । ତେବେ ଉଭୟ ମଧ୍ୟରେ କିଛିଟା ପାର୍ଥକ୍ୟ ରହିଛି । ଶିଳ୍ପକର ଉଦାହରଣ - 'କନକବତୀ-ମାଧବ' ।

**ବିଳାସିକା** - ଏହା ଏକ ଅଙ୍କବିଶିଷ୍ଟ । ଶୃଙ୍ଗାର ରସର ପ୍ରାଧାନ୍ୟ ଥାଏ । ଏହା ଦଶ ଲାସ୍ୟାଙ୍ଗ ଯୁକ୍ତ । ନାୟକକୁ ସାହାଯ୍ୟ ପାଇଁ ବିଟ ଏବଂ ପୀଠମର୍ଦ୍ଦ ମଧ୍ୟ ଆସିଥାଏ । ଗର୍ଭ, ବିମର୍ଶକୁ ଛାଡ଼ି ଅନ୍ୟ ତିନି ସନ୍ଧି ଥାଏ । ନାୟକ ହୀନଗୁଣଯୁକ୍ତ । ସୁନ୍ଦର ବେଶର ବର୍ଣ୍ଣନା ସ୍ଥାନ ପାଇଥାଏ ।

**ଦୁର୍ମଲ୍ଲିକା** - ଶାରଦାତନୟ ଏଠାରେ ପ୍ରାଚୀନ ଆଚାର୍ଯ୍ୟମାନଙ୍କର ତିନୋଟି ମତରେ ଉଦ୍ଧାର କରିଛନ୍ତି । ପ୍ରଥମ ମତାନୁସାରେ, ଏହା ଚାରି ଅଙ୍କବିଶିଷ୍ଟ, ଗର୍ଭକୁ ଛାଡ଼ି ଅନ୍ୟ ସନ୍ଧି ଥାଏ । ଏହାର ନାୟିକା ପ୍ରୌଢ଼ା । ବିଶ୍ୱନାଥଙ୍କ ମତରେ ନାୟକ ଛୋଟ ଜାତିର, ସବୁ ନଟ ଚତୁର । ଦ୍ୱିତୀୟ ମତାନୁସାରେ, ଏଥିରେ ଏକ ଦୂତିକା ଥାଏ, ନାୟକ-ନାୟିକାଙ୍କ ଚୌର୍ଯ୍ୟରତିର ବର୍ଣ୍ଣନା ଥାଏ । ଏମାନେ ଦର୍ଶକଠାରୁ ଧନ ମାଗନ୍ତି । ତୃତୀୟ ମତାନୁସାରେ, ଏହାକୁ ମଧ୍ୟ 'ମତ୍ତାଲ୍ଲିକା' କୁହାଯାଏ ।

**ହଲ୍ଲୀଶ ବା ହଲ୍ଲୀସକ** - ବିଶ୍ୱନାଥ ଏହାର ନାମ ହଲ୍ଲୀଶ ଦେବାବେଳେ, ଭୋଜ ଏବଂ ଶାରଦାତନୟ ଏହାକୁ ହଲ୍ଲୀସକ କହିଛନ୍ତି । ଭୋଜ, ଅଭିନବଗୁପ୍ତ ଆଦିଙ୍କ ମତରେ, ଏହା ଏକପ୍ରକାର ନୃତ୍ୟ । ସ୍ତ୍ରୀମାନେ ମଣ୍ଡଳାକାରରେ ଏହାକୁ ପରିବେଷଣ କରନ୍ତି । ଏଥିରେ ଗୋଟିଏ ନେତା ରହିଥାଏ । ବିଶ୍ୱନାଥଙ୍କ ମତରେ, ଏହା ଏକ ଅଙ୍କବିଶିଷ୍ଟ । ୭/୮/୧୦ ସ୍ତ୍ରୀ ଚରିତ୍ର ଥାଏ । କୈଶିକୀ ବୃତ୍ତି, ମୁଖ ତଥା ନିର୍ବହଣ ସନ୍ଧି ରହିଥାଏ । ଗାନରେ ଲୟ ଏବଂ ତାଳ ଥାଏ । ଶାରଦାତନୟ ନାୟକର ଅଧିକ ବର୍ଣ୍ଣନା ଦେଇଛନ୍ତି । ଉଦାହରଣ - କେଳିରୈବତକ ।

**ଭାଣ** - ଏହି ଉପରୂପକର ବିବରଣୀ ଭୋଜ, ଶାରଦାତନୟ ଏବଂ ରାମଚନ୍ଦ୍ର-ଗୁଣଚନ୍ଦ୍ର ଦେଇଛନ୍ତି । ଭାଣ ତିନି ଶ୍ରେଣୀର ; ଯଥା - ଶୁଦ୍ଧ, ସଙ୍କୀର୍ଣ୍ଣ ଏବଂ ଚିତ୍ର । ଗୀତର ଭାଷା ଅନୁଯାୟୀ ଏହା କରାଯାଇଛି । କଥାବସ୍ତୁ ଅନୁଯାୟୀ ଏହା ତିନି ଶ୍ରେଣୀର ; ଯଥା - ଉଦ୍ଧତ, ଲଳିତ ଏବଂ ଲଳିତୋଦ୍ଧତ । ଭୋଜ ଏବଂ ଶାରଦାତନୟ 'ନନ୍ଦିମାଳୀ' ନାମକ ଭାଣର ଅନ୍ୟ ଏକ ଭେଦ ମଧ୍ୟ ସ୍ୱୀକାର କରିଛନ୍ତି ।

**ଭାଣିକା** - ଭାଣିକାର ଲକ୍ଷଣ ନେଇ ବିଶ୍ୱନାଥ ଏବଂ ଶାରଦାତନୟଙ୍କ ମତ ପାର୍ଥକ୍ୟ ଦେଖାଯାଏ । ଶାରଦାତନୟଙ୍କ ମତରେ ଭାଣର ଏକ ଭିନ୍ନ ରୂପ ହେଉଛି ଭାଣିକା । ଏହା ଅଭିନୟାତ୍ମକ ଏବଂ ଶୃଙ୍ଗାର ରସ ପ୍ରଧାନ । କଥାବସ୍ତୁ ଛୋଟ । ମୁଖ, ପ୍ରତିମୁଖ ଏବଂ ନିର୍ବହଣ ସନ୍ଧିଯୁକ୍ତ । ବିଟ, ବିଦୂଷକ, ପୀଠମର୍ଦ୍ଦ ଏହାର ପାତ୍ର । ପାଞ୍ଚାଳୀ ରୀତି ସହ ଦଶ ଲାସ୍ୟାଙ୍ଗ ଥାଏ । ବିଶ୍ୱନାଥଙ୍କ ମତରେ ଏଥିରେ ସୁନ୍ଦର ବେଶ ବର୍ଣ୍ଣନା, ମୁଖ ତଥା ନିର୍ବହଣ ସନ୍ଧି ଥାଏ । ଏକ ଅଙ୍କବିଶିଷ୍ଟ ଏହି ରଚନାରେ କୈଶିକୀ ତଥା ଭାରତୀ ବୃତ୍ତି ଥାଏ । ଏହାର ନାୟକ ମନ୍ଦ ମାତ୍ର ନାୟିକା ଉଦାତ୍ତ ଶ୍ରେଣୀର । ଏଥିରେ ସାତୋଟି ଅଙ୍ଗ ରହିଥାଏ । 'କାମଦତ୍ତା' ଏହାର ସାର୍ଥକ ଉଦାହରଣ ।

**ଡୋମ୍ବୀ** - ଶାରଦାତନୟଙ୍କ ମତରେ ଏହା ଏକ ଅଙ୍କବିଶିଷ୍ଟ, ନାୟିକା ଉଦାତ୍ତ । ଏଥିରେ ବୀର, ଶୃଙ୍ଗାର ରସ ସହିତ କୈଶିକୀ, ଭାରତୀ ବୃତ୍ତି ଥାଏ । ନାୟକ ମନ୍ଦ ହୋଇଥାଏ । ଏହା ସାତ ଅଙ୍କବିଶିଷ୍ଟ - ବିନ୍ୟାସ, ଉପନ୍ୟାସ, ବିବୋଧ, ସାଧ୍ୱସ, ଅନୁବୃତ୍ତି, ସଂହାର ଏବଂ ସମର୍ପଣ । ବିଶ୍ୱନାଥ ଡୋମ୍ବୀକୁ ଭାଣିକା ଅର୍ଥରେ ଗ୍ରହଣ କରିଛନ୍ତି ।

**ମଲ୍ଲିକା** - ଭାବପ୍ରକାଶନରେ ଏହାକୁ ଉପରୂପକର ଆଖ୍ୟା ଦିଆଯାଇଛି । ଏହା ଏକପ୍ରକାର ଦୁର୍ମଲ୍ଲିକା । ଏଥିରେ ସମ୍ଭୋଗ ଶୃଙ୍ଗାର ଏବଂ କୈଶିକୀ ବୃତ୍ତି ଥାଏ । ଏହା ଏକ ବା ଦୁଇ ଅଙ୍କବିଶିଷ୍ଟ । ବିଟ ତଥା ବିଦୂଷକର ପ୍ରାଧାନ୍ୟ ଥାଏ । ମୁଖ, ପ୍ରତିମୁଖ, ନିର୍ବହଣ ସନ୍ଧି ରହେ ।

**କଳ୍ପବଲ୍ଲୀ** - ଏହାର ନାୟିକା ବାସକସଜ୍ଜା ବା ଅଭିସାରିକା ଏବଂ ନାୟକ ଉଦାତ୍ତ । ହାସ୍ୟ ଏବଂ ଶୃଙ୍ଗାରରସର ପ୍ରାଧାନ୍ୟ ଥାଏ । ଦଶ ଲାସ୍ୟାଙ୍ଗ ଏବଂ ତିନି ଲୟ ରହେ । ପୀଠମର୍ଦ୍ଦ ଏହାର ଉପନାୟକ । ମୁଖ, ପ୍ରତିମୁଖ, ନିର୍ବହଣ ସନ୍ଧି ସହିତ ଉଦାତ୍ତବର୍ଣ୍ଣନା ସ୍ଥାନପାଏ । ଉଦାହରଣ - ମାଣିକ୍ୟବଲ୍ଲିକା ।

**ପାରିଜାତକ** - ଏଥିରେ ନାୟକ ଦେବ ବା କ୍ଷତ୍ରିୟ । ରସ ହେଉଛି ବୀର ବା ଶୃଙ୍ଗାର । ଏହା ଏକ ଅଙ୍କବିଶିଷ୍ଟ ଏବଂ ମୁଖ, ନିର୍ବହଣ ସନ୍ଧିଯୁକ୍ତ । ନାୟକ ଉଦାତ୍ତ ଏବଂ ନାୟିକା କଳହାନ୍ତରିତା । ବିଦୂଷକର ହାସ ପରିହାସ ସ୍ଥାନ ପାଇଥାଏ । ଅନେକ ପ୍ରକାର ନୃତ୍ୟର ସଂଯୋଜନ ହୋଇଥାଏ । ଉଦାହରଣ - 'ଗଙ୍ଗାତରଙ୍ଗିକା' । କେତେକ ଏହାକୁ ପାରିଜାତ ଲତା କହନ୍ତି ।

## ନାୟକ

ନାଟକର ଚରିତ୍ର ମଧ୍ୟରେ ଭାରତର ଆଚାର୍ଯ୍ୟଗଣ ନାୟକ ଏବଂ ନାୟିକା ଉପରେ ବିଶେଷ ଧ୍ୟାନ ଦେଇଛନ୍ତି । ନାଟକ ବା ରୂପକର ପ୍ରଧାନ ଚରିତ୍ରକୁ ନାୟକ ବା ନେତା କୁହାଯାଏ । ନାଟକରେ ଶେଷ ପର୍ଯ୍ୟନ୍ତ ନାୟକର ନାଟକୀୟ କଥା ଶୃଙ୍ଖଳା ପରିବ୍ୟାପ୍ତ

ହୋଇଥାଏ । 'ନି' ଧାତୁରୁ ନେତା ବା ନାୟକ ଆସିଛି, ଯାହାର ଅର୍ଥ ନେବା ବା ଆଗେଇନେବା । ନେତା ବା ନାୟକ କଥାବସ୍ତୁକୁ ଫଳାଗମ ପର୍ଯ୍ୟନ୍ତ ଟାଣିନିଏ । ତାକୁହିଁ କେନ୍ଦ୍ରକରି ସବୁ ଘଟଣା ଗୁନ୍ଥା ଯାଇଥାଏ । ଭାରତରେ ସଂସ୍କୃତ ନାଟକରେ ଘଟଣା ଏବଂ ଚରିତ୍ରକୁ ସମାନ ମହତ୍ତ୍ୱ ପ୍ରଦାନ କରାଯାଇଛି । ହେଲେ ଆରିଷ୍ଟଟଲ ଟ୍ରାଜେଡ଼ିରେ ଚରିତ୍ରଠାରୁ ଘଟଣା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ମତରେ ଚରିତ୍ର ବିନା ଟ୍ରାଜେଡ଼ି ରଚନା କରାଯାଇପାରେ, ମାତ୍ର ବିନା କଥାବସ୍ତୁରେ ଟ୍ରାଜେଡ଼ି ଅସମ୍ଭବ ।

## ଗୁଣ ବା ଯୋଗ୍ୟତା

ନାଟକର ନାୟକ ସର୍ବଗୁଣସମ୍ପନ୍ନ ହେବା ଆବଶ୍ୟକ । ଭରତଙ୍କ ମତରେ, ଅନେକ ପୁରୁଷ ଚରିତ୍ରଙ୍କ ମଧ୍ୟରେ ଯେ ଅଗ୍ରଣୀ, ତାକୁ ନାୟକ କୁହାଯାଏ । ବିପତ୍ତି ଏବଂ ଅଭ୍ୟୁଦୟରେ ଯିଏ ସୁଖ ଅନୁଭବ କରେ, ଏ ଦୁଇଟି ଅବସ୍ଥା ମଧ୍ୟରେ ଯେ ନିଜର ଶ୍ରେଷ୍ଠତା ପ୍ରତିପାଦନ କରିଥାଏ, ତାକୁ ନାୟକ କୁହାଯାଏ । ଧନଞ୍ଜୟ ଏବଂ ଅନ୍ୟ ଆଚାର୍ଯ୍ୟଗଣ ନାୟକ ପାଇଁ ଅନେକ 'ଗୁଣ' ନିର୍ଣ୍ଣୟ କରିଛନ୍ତି ଯଥା - ପ୍ରିୟଂବଦ, ଶୁଚି, ପ୍ରଜ୍ଞାବାନ୍, ବୁଦ୍ଧିମାନ୍, ଯୁବା, ସ୍ଥିର, ବାଗ୍ମୀ, ରକ୍ତଲୋକ, ବିନୀତ, ମଧୁର, ତ୍ୟାଗୀ, ଦକ୍ଷ, ଆତ୍ମସମ୍ମାନୀ, ଶାସ୍ତ୍ରଚକ୍ଷୁ, କଳାବାନ୍, ଉତ୍ସାହୀ, ସ୍ମୃତିସଂପନ୍ନ, ବୀର, ଦୃଢ଼, ତେଜସ୍ୱୀ, ଧାର୍ମିକ । ଏସବୁ ଗୁଣ ନାୟକ ପାଖରେ ଥିବା ଆବଶ୍ୟକ ।

## ନାୟକ ଭେଦ

ଭରତ ମୁନି ନାୟକର ଚାରି ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି, ଯଥା - ଧୀରୋଦାତ୍ତ, ଧୀରୋଦ୍ଧତ, ଧୀରଲଳିତ ଏବଂ ଧୀରପ୍ରଶାନ୍ତ । ପରବର୍ତ୍ତୀ ଆଚାର୍ଯ୍ୟଗଣ ଭରତମୁନିଙ୍କୁ ଅନୁସରଣ କରିଛନ୍ତି । ନାମରେ କ୍ରମର ପରିବର୍ତ୍ତନ ହୋଇଛି । ପ୍ରତ୍ୟେକ ନାୟକ ଭିତରେ ଧୈର୍ଯ୍ୟ ରହିବା ଆବଶ୍ୟକ । ଏଣୁ ନାୟକର ପ୍ରତିଟି ଭେଦ ସହିତ 'ଧୀର' ଶବ୍ଦ ଯୋଡ଼ା ଯାଇଛି । ତେବେ ନାୟକର ଭେଦ, ତାର ପ୍ରକୃତିକୁ ଆଧାର କରି କରାଯାଇଛି । ଭରତଙ୍କ ମତରେ ଦେବତା ଧୀରୋଦ୍ଧତ, ରାଜା ଧୀରଲଳିତ, ସେନାପତି-ମନ୍ତ୍ରୀ ଧୀରୋଦାତ୍ତ, ବ୍ରାହ୍ମଣ-ବଣିକ ଧୀରପ୍ରଶାନ୍ତ ନାୟକ ।

**ଧୀରୋଦାତ୍ତ** - ରାଜା ବା ରାଜକୁଳର ଚରିତ୍ର ଧୀରୋଦାତ୍ତ ନାୟକ । ସେ ଅତ୍ୟନ୍ତ ଗମ୍ଭୀର, କ୍ଷମାଶୀଳ, ସ୍ଥିର, ଅଭିମାନଶୂନ୍ୟ, ଦୃଢ଼ବ୍ରତର ଅଧିକାରୀ ହେବା ଆବଶ୍ୟକ । ସେ ମଧ୍ୟ ମହାସତ୍ତ୍ୱ, ଅବିକତ୍ଥନର ଅଧିକାରୀ । ନାଟକର ନାୟକ ସାଧାରଣତଃ ଧୀରୋଦାତ୍ତ ହୋଇଥାଏ । ଅଭିଜ୍ଞାନଶାକୁନ୍ତଳମ୍‌ର ଦୁଷ୍ମନ୍ତ, ଉତ୍ତର ରାମଚରିତର ରାମଚନ୍ଦ୍ର, ନାଗାନନ୍ଦର ଜୀମୂତବାହନ ଧୀରୋଦାତ୍ତ ନାୟକ । ଧୀରୋଦାତ୍ତ ନାୟକ ଭିତରେ ଉଦାତ୍ତ ପ୍ରକୃତି ବିଦ୍ୟମାନ ରହିବା ଆବଶ୍ୟକ । ଉତ୍କୃଷ୍ଟ ହେବା ବୃତ୍ତିକୁ ଉଦାତ୍ତ କୁହାଯାଏ । ନାୟକ

ରାମଚନ୍ଦ୍ରଙ୍କ ଭିତରେ ଜନକଲ୍ୟାଣ ତଥା ସଂସାରପାଳନର ସବୁ ଗୁଣ ଦେଖିବାକୁ ମିଳେ । ସେ ହିଁ ଦୁଷ୍ଟକୁ ଦଣ୍ଡ ଦେଇପାରନ୍ତି । ତେଣୁ ରାମଚନ୍ଦ୍ର ଧୀରୋଦାତ୍ତ ନାୟକ ।

**ଧୀରୋଦ୍ଧତ** - ଧୀରୋଦ୍ଧତ ନାୟକ ମାୟାବୀ, ଘମଣ୍ଡୀ, ଚଞ୍ଚଳଚିତ୍ତ, କ୍ରୋଧୀ, ବୀର ହୋଇଥାଏ । ତାର ହୃଦୟ ଆତ୍ମଶ୍ଳାଘାରେ ପୂର୍ଣ୍ଣ । ଦର୍ପ ଏବଂ ଈର୍ଷା ତାକୁ ପଥ କଢ଼ାଏ । ମନ୍ତ୍ରବଳରେ ମିଛ ବସ୍ତୁ ଯିଏ ସୃଷ୍ଟି କରିପାରେ, ତାକୁ ମାୟାବୀ କୁହାଯାଏ । ଉଦ୍ଧତ ନାୟକ ବହୁତ କମ୍ ଦେଖିବାକୁ ମିଳେ । ଗୌଣ ପାତ୍ର ଭିତରେ ଏହି ଉଦ୍ଧତ ଲକ୍ଷଣ ଦେଖାଯାଏ । ଯେଉଁ ରୂପକରେ ନାୟକ ଧୀରୋଦ୍ଧତ, ତାହା ପୂର୍ଣ୍ଣାଙ୍ଗ ସୃଷ୍ଟି ହୋଇ ନ ପାରେ । ଡିମ, ବ୍ୟାୟୋଗ, ସମବକାର, ଇହାମୃଗ ଏହି ପ୍ରକାର ରୂପକ । ମହାବୀରଚରିତର 'ପରଶୁରାମ' ଧୀରୋଦ୍ଧତ ନାୟକ, ଯେ କି କୈଳାସ ପର୍ବତକୁ ଉଠାଇପାରନ୍ତି, ତିନିଲୋକକୁ ଜୟ କରିପାରନ୍ତି । 'ବେଣୀସଂହାର'ରେ ଭୀମସେନ ଧୀରୋଦ୍ଧତ ନାୟକ ।

**ଧୀରଲଳିତ** - ଧୀରଲଳିତ ନାୟକ କୋମଳ ସ୍ୱଭାବର ହୋଇଥାଏ । ସେ ଗୀତ ଏବଂ ନୃତ୍ୟ ଆଦି ଲଳିତକଳାରେ ଆସକ୍ତ ରହେ । ସଦାସର୍ବଦା ସେ ନିଶ୍ଚିନ୍ତ ଥାଏ । ତାଙ୍କର ରାଜକାର୍ଯ୍ୟର ଚିନ୍ତା ମନ୍ତ୍ରୀ କରେ । ଏଣୁ ଧୀରଲଳିତ ନାୟକ ଅନ୍ୟ ଭାବରେ ମତ୍ତ ରହେ । ତାର ସବୁ ସମୟ ଭୋଗବିଳାସ, ନୃତ୍ୟ, ଗୀତ ଆଦିରେ କଟିଯାଏ । ଶୃଙ୍ଗାର ରସର ପ୍ରାଧାନ୍ୟ ହେତୁ ସେ ଅତ୍ୟନ୍ତ କୋମଳ ସ୍ୱଭାବର ହୋଇଥାଏ । ଧୀରଲଳିତ ନାୟକର ଏକମାତ୍ର କାର୍ଯ୍ୟ ହେଉଛି, କୌଣସି ନବୀନ ସୁନ୍ଦରୀକୁ ପାଇବା । ଏଥିପାଇଁ ଆସୁଥିବା ସବୁ ବାଧାକୁ ସେ ଅତିକ୍ରମ କରିଯାଏ । ନାଟିକାର ପ୍ରାୟ ସବୁ ନାୟକ ଧୀରଲଳିତ ହୋଇଥାନ୍ତି । ଧୀରଲଳିତ ନାୟକର ଶ୍ରେଷ୍ଠ ଉଦାହରଣ ହେଉଛି ବତ୍ସରାଜ ଉଦୟନ ।

**ଧୀରପ୍ରଶାନ୍ତ** - ଧୀରପ୍ରଶାନ୍ତ ନାୟକ ଭିତରେ ଅନେକ ଭଲଗୁଣ ସାମାନ୍ୟ ଭାବେ ଦେଖିବାକୁ ମିଳେ । ସେ ତ୍ୟାଗୀ ଏବଂ ଅନେକ କୃତିତ୍ୱର ଅଧିବାସୀ । ମନ୍ତ୍ରୀପୁଅ, ବୈଶ୍ୟ, ବ୍ରାହ୍ମଣ ଆଦି ହେଉଛନ୍ତି ଧୀରପ୍ରଶାନ୍ତ ନାୟକ । ପ୍ରକରଣର ନାୟକ ମଧ ଧୀରପ୍ରଶାନ୍ତ । ବ୍ରାହ୍ମଣ, ବଣିକ ଆଦିଙ୍କ ସ୍ୱଭାବ ଶାନ୍ତ । 'ମାଳତୀ ମାଧବ' ପ୍ରକରଣର ନାୟକ ମାଧବ, 'ମୃଚ୍ଛକଟିକ' ତଥା 'ଦରିଦ୍ର ଚାରୁଦତ୍ତ'ର ନାୟକ ଚାରୁଦତ୍ତ ଧୀରପ୍ରଶାନ୍ତ ଅଟେ ।

ନାୟିକା ପ୍ରତି ନାୟକର ବ୍ୟବହାର ଦୃଷ୍ଟିକୋଣରୁ ଆଚାର୍ଯ୍ୟଗଣ ନାୟକର ଚାରିପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି । ଯେତେବେଳେ ନାୟକ କୌଣସି ନବୀନ ନାୟିକା ପ୍ରେମରେ ବଶୀଭୂତ ହୋଇଯାଏ, ତେବେ ସେ ତାର ପ୍ରଥମ ନାୟିକା ପ୍ରତି ଉଚିତ ବ୍ୟବହାର ପ୍ରଦର୍ଶନ କରି ନ ଥାଏ । ସେହି ବ୍ୟବହାରକୁ ଆଧାର କରି ନାୟକ ତିନିପ୍ରକାର ହୋଇଥାନ୍ତି ଯଥା - ଦକ୍ଷିଣ, ଶଠ ଏବଂ ଧୃଷ୍ଟ । କେତେକ ନାୟକ ପ୍ରଥମ ନାୟିକା ପ୍ରତି ସଦା ଅନୁରକ୍ତ ଥାଆନ୍ତି । ତେଣୁ ଏମାନେ କୌଣସି ନୂଆ ନାୟିକାର ପ୍ରେମରେ ପଡ଼ିପାରନ୍ତି

ନାହିଁ । ତାଙ୍କୁ ଅନୁକୂଳ କୁହାଯାଏ । ଏହିପରି ନାୟିକା ପ୍ରତି ପ୍ରଦର୍ଶିତ ବ୍ୟବହାର ଦୃଷ୍ଟିକୋଣରୁ ନାୟକ ଚାରିପ୍ରକାର ହୋଇଥାନ୍ତି ।

**ଦକ୍ଷିଣ** - ଦକ୍ଷିଣ ନାୟକର ନୂତନ ନାୟିକା ପ୍ରତି ପ୍ରେମ ଭାବ ଥିଲେ ମଧ୍ୟ ସେ ପ୍ରଥମ ନାୟିକାକୁ କେବେ ଅବହେଳା କରେ ନାହିଁ । ପୂର୍ବ ନାୟିକା ପ୍ରତି ଏହି ନାୟକର ବ୍ୟବହାରରେ କୌଣସି ପରିବର୍ତ୍ତନ ଦେଖିବାକୁ ମିଳେନା । ପୂର୍ବ ନାୟିକାକୁ ସେ କୌଣସି ପ୍ରକାର ଉଦାସୀନ ହେବାକୁ ଦିଏ ନାହିଁ । ପ୍ରଥମ ବା ଜ୍ୟେଷ୍ଠା ଦାମ୍ପିକା ପ୍ରତି ଏଠି ନାୟକର ସହୃଦୟତାରେ ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏ ନାହିଁ । ପ୍ରାୟତଃ ନାଟକର ନାୟକ ଦକ୍ଷିଣ ହୋଇଥାନ୍ତି । ବତ୍ସରାଜ ଉଦୟନ ହେଉଛନ୍ତି ଜଣେ ସଫଳ ଦକ୍ଷିଣ ନାୟକ ।

**ଶଠ** - ଶଠ ନାୟକ ପ୍ରକାଶ୍ୟରେ କିଛି ଜଣାପଡ଼େ ନାହିଁ । ପ୍ରଥମ ବା ଜ୍ୟେଷ୍ଠା ନାୟିକାର ଶଠ ନାୟକ ଅନିଷ୍ଟ କରିଥାଏ । ଲୁଚିଛପି ଏଠି ନାୟକ ଜ୍ୟେଷ୍ଠାକୁ ପ୍ରେମ କରିଥାଏ । କାରଣ ନୂତନ ନାୟିକାର ପ୍ରେମ ପାଶରେ ସେ ବାନ୍ଧି ହୋଇଥାଏ । ତା' ମନରେ ସେ ଆଘାତ ଦେବାକୁ ଚାହେନା କିମ୍ବା ପ୍ରଥମ ନାୟିକାକୁ ଛାଡ଼ିପାରେନା । ତା'ପାଇଁ ଉଭୟ ନାୟିକା ପ୍ରିୟ । ଉଭୟଙ୍କୁ ସେ ଲୁଚିଛପି ପ୍ରେମ କରିଥାଏ, ଏଠି ଜ୍ୟେଷ୍ଠା ନାୟିକା କେବେ ଚାହେନା ଯେ ତା' ନାୟକ ଆଉ ଜଣକୁ ପ୍ରେମ କରୁ । ଶଠ ନାୟକର ହୃଦୟ ପରିଷ୍କାର ନୁହେଁ । ଉପରକୁ ଦେଖାଇବା ଭଳି ସେ ମିଠା ମିଠା କଥା କହିଥାଏ । ସେ ଆନ୍ତରିକ ଭାବେ ଜ୍ୟେଷ୍ଠା ବା ପ୍ରଥମ ନାୟିକାକୁ ଭଲ ପାଇ ନ ଥାଏ ।

**ଧୃଷ୍ଟ** - ନାୟକ ମଧ୍ୟ ବେଳେବେଳେ ନୂତନ ନାୟିକାକୁ ଲୁଚିଛପି ପ୍ରେମ କରିଥାଏ ବା ଶୃଙ୍ଗାର କରିଥାଏ, ଯାହାର ଚିହ୍ନ ନାୟକର ଶରୀରରେ ଲାଗିଥିବା ଚିହ୍ନରୁ ଜଣାପଡ଼ିଯାଏ । ସେ ଜ୍ୟେଷ୍ଠା ନାୟିକା ପାଖକୁ ଯାଇ ପ୍ରେମ ନିବେଦନ କରିଥାଏ । ହେଲେ ତା' ଦେହରେ ଲାଗିଥିବା ଅଙ୍ଗବିକାରଟି ଜ୍ୟେଷ୍ଠା ଆଖିରେ ଧରାପଡ଼ିଯାଏ । ସେ ନୂତନ ନାୟିକା ପାଖକୁ ଯାଇଥିବା କଥା ପରିଷ୍କାର ହୋଇଯାଏ । ଏହି ପ୍ରକାର ନାୟକକୁ ଧୃଷ୍ଟ ନାୟକ କୁହାଯାଏ । ନିଜ ଦେହରେ ନାନା ଅଙ୍ଗବିକାର ଥିଲେ ମଧ୍ୟ, ସେ ଜ୍ୟେଷ୍ଠା ପାଖକୁ ଯିବା ପାଇଁ ସଙ୍କୋଚ ବୋଧ କରେ ନାହିଁ ।

ଧୃଷ୍ଟ ନାୟକ ଜାଣେ, ସେ ଜ୍ୟେଷ୍ଠା ପ୍ରତି ଅନ୍ୟାୟ କରୁଛି । ତଥାପି ସେଥିପାଇଁ ତାର ଅନୁଶୋଚନା ନ ଥାଏ । ଜ୍ୟେଷ୍ଠା ନାୟିକା ପାଖରୁ ଗାଳି ଖାଇଲେ ମଧ୍ୟ ଧୃଷ୍ଟ ନାୟକ ଲଜ୍ଜାବୋଧ କରେ ନାହିଁ । ଧରାପଡ଼ିଲେ ମଧ୍ୟ ସେ ମିଛର ସାହାରା ନେବାକୁ ପଛାଏ ନାହିଁ । ପ୍ରକୃତି ଦୃଷ୍ଟିରୁ ଧୃଷ୍ଟ ନାୟକ ହେଉଛି ଏକ ଠକ ବା ଧପାବାଜ୍ । ସେ ଜ୍ୟେଷ୍ଠ ନାୟିକାକୁ ଖାତିର କରେ ନାହିଁ । ବେଳେ ବେଳେ ସେ ପ୍ରକାଶ୍ୟରେ ମଧ୍ୟ କନିଷ୍ଠା ବା ନୂତନ ନାୟିକାକୁ ପ୍ରେମ କରିବସେ ।

ଅନୁକୂଳ - ଯେଉଁ ନାୟକ ତାର ନାୟିକା ପ୍ରତି ସଦାସର୍ବଦା ଅନୁକୂଳ ମନୋଭାବ ପୋଷଣ କରେ, ତାକୁ ଅନୁକୂଳ ନାୟକ କୁହାଯାଏ । ତା' ଜୀବନରେ କେବେ ଦ୍ୱିତୀୟ ନାୟିକାର ସ୍ଥାନ ଆସି ନ ଥାଏ । ନୂତନ ନାୟିକାକୁ ପ୍ରେମ କରିବା ଖିଆଲ କେବେ ତା' ମନକୁ ଆସେ ନାହିଁ । ସେ ଏକପତ୍ନୀ ବ୍ରତରେ ବିଶ୍ୱାସ କରେ । ଅନୁକୂଳ ନାୟକର ସଫଳ ଉଦାହରଣ ହେଉଛନ୍ତି ରାମଚନ୍ଦ୍ର । 'ଉତ୍ତରରାମଚରିତ' ଗ୍ରନ୍ଥରେ ଭବଭୂତି ରାମଚନ୍ଦ୍ରଙ୍କ ଚରିତ୍ରକୁ ଏକ ଅନୁକୂଳ ନାୟକରେ ପରିଣତ କରିଛନ୍ତି ।

ଆଲୋଚିତ ଷୋହଳ ପ୍ରକାର ନାୟକର ପୁଣି ପ୍ରତ୍ୟେକଙ୍କର ତିନି ତିନି ପ୍ରକାର ଭେଦ ରହିଛି ; ଯଥା - ଉତ୍ତମ, ମଧ୍ୟମ ଏବଂ ଅଧମ । ଏହିପରି ନାୟକ ୪୮ (୧୬ x ୩ = ୪୮) ପ୍ରକାର ହୋଇଥାଏ । ଏହି ୪୮ ପ୍ରକାର ନାୟକଙ୍କର ପୁଣି ତିନି ତିନି ପ୍ରକାର ଭେଦ ରହିଛି ଯଥା - ଦିବ୍ୟ, ଅଦିବ୍ୟ ଏବଂ ଦିବ୍ୟାଦିବ୍ୟ । ଅର୍ଥାତ୍ ୧୪୪ (୪୮ x ୩ = ୧୪୪) ପ୍ରକାର ଭେଦ ଦେଖିବାକୁ ମିଳେ । ମୋଟ ଉପରେ ନାୟକ ୧୪୪ ପ୍ରକାର ହୋଇଥାନ୍ତି । ଦିବ୍ୟ ନାୟକ - ଦେବତା, ଅଦିବ୍ୟ ନାୟକ - ମନୁଷ୍ୟ ଏବଂ ଦିବ୍ୟାଦିବ୍ୟ ନାୟକ - ମନୁଷ୍ୟ ରୂପଧାରୀ ଦେବତା ।

## ନାୟିକା

ନାଟକରେ ନାୟିକା ହେଉଛି ଏକ ମୁଖ୍ୟ ଭୂମିକା । ନାୟକର ପତ୍ନୀ ବା ପ୍ରିୟାକୁ ସାଧାରଣତଃ ନାୟିକା କହନ୍ତି । କିନ୍ତୁ ଆଧୁନିକ ପାଶ୍ଚାତ୍ୟ ନାଟ୍ୟସିଦ୍ଧାନ୍ତରେ ନାୟିକା ଯେ ନାୟକର ପତ୍ନୀ ବା ପ୍ରେମିକା ହେବାକୁ ବାଧ ସେଭଳି କିଛି ଧରାବନ୍ଧା ରୀତି ନାହିଁ । ପାଶ୍ଚାତ୍ୟ ଅନୁସିଦ୍ଧାନ୍ତ ଅନୁସାରେ, ନାଟକର ଘଟଣା ପ୍ରବାହରେ ଯେଉଁ ନାରୀ ମୁଖ୍ୟ ଭୂମିକା ନେଇଥାଏ, ସେ ହିଁ ନାୟିକା । ଆମର ଭାରତୀୟ ନାଟ୍ୟାଚାର୍ଯ୍ୟଗଣ ନାୟକଙ୍କ ପ୍ରିୟାକୁ ନାୟିକା ଭାବେ ଗ୍ରହଣ କରିଛନ୍ତି । ସଂସ୍କୃତ ନାଟକ ବା ରୂପକରେ ନାୟକ ଭଳି ନାୟିକାର ମଧ୍ୟ ବିଶେଷତ୍ୱ ରହିଛି ।

ନାଟ୍ୟଶାସ୍ତ୍ରରେ ନାୟିକା ସମ୍ପର୍କରେ ଉଲ୍ଲେଖ ରହିଛି । ଭରତଙ୍କ ମତରେ ନାୟିକା ଚାରି ଶ୍ରେଣୀର ଯଥା - ଦିବ୍ୟା, ନୃପତିନୀ, କୁଳସ୍ତ୍ରୀ ଏବଂ ଗଣିକା । ହେଲେ ପରବର୍ତ୍ତୀ ଆଚାର୍ଯ୍ୟଗଣ ନାୟିକାର ଭେଦକୁ ଅନ୍ୟପ୍ରକାରେ ନେଇଛନ୍ତି । ସେମାନେ ଏହାକୁ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ପ୍ରଥମଟି, ନାୟକ-ନାୟିକାଙ୍କ ପରସ୍ପର ସମ୍ବନ୍ଧକୁ ଆଧାର କରି, ଦ୍ୱିତୀୟଟି ନାୟିକାର ଅବସ୍ଥାକୁ ଆଧାର କରି, ତୃତୀୟଟି ନାୟିକାର ପ୍ରେମଜନିତ ଦଶାକୁ ଆଧାର କରି ବର୍ଣ୍ଣିତ ହୋଇଛି । ପାରସ୍ପରିକ ସମ୍ବନ୍ଧକୁ ଆଧାର କରି ନାୟିକା ହେଉଛି ତିନି ଶ୍ରେଣୀର ; ଯଥା - ସ୍ୱକୀୟା ବା ସ୍ୱୀୟା, ଅନ୍ୟା ବା ପରକୀୟା, ସାଧାରଣ ସ୍ତ୍ରୀ । ସ୍ୱକୀୟା ହେଉଛି ବିବାହିତା ପତ୍ନୀ । ପରକୀୟା ଅନ୍ୟର ସ୍ତ୍ରୀ କିମ୍ବା ଅନୂଢ଼ା କନ୍ୟା । ସାଧାରଣ ସ୍ତ୍ରୀ ବା ଗଣିକା ।

**ସ୍ୱକୀୟା** - ସ୍ୱକୀୟା ନାୟିକାର ସୁନ୍ଦର ଉଦାହରଣ ହେଉଛି 'ସୀତା' । ସେ ପତିବ୍ରତା, ସଦ୍‌ଚରିତ୍ରା, ସରଳ ସ୍ୱଭାବର ତଥା ଲଜ୍ଜାଶୀଳ । ଅବସ୍ଥା ଅନୁସାରେ ସ୍ୱକୀୟା ନାୟିକା ତିନି ଶ୍ରେଣୀର ଯଥା - ମୁଗ୍‌ଧା, ମଧ୍ୟା ଏବଂ ପ୍ରଗଲ୍‌ଭା । ମୁଗ୍‌ଧା ନାୟିକା ହେଉଛି ପ୍ରାପ୍ତଯୌବନା । ସେ ସରଳ ସ୍ୱଭାବର । ପ୍ରେମକଳାରେ ଅନଭିଜ୍ଞ । ପ୍ରେମକ୍ରୀଡ଼ା ପାଇଁ ତା' ମନ ଭିତରେ ଭୟ ଥାଏ । ନାୟକ ପାଖକୁ ଯିବା ପାଇଁ ଡରିଥାଏ । ଏକାକିନୀ ରହିଲାବେଳେ ମଧ୍ୟ ଡରିଥାଏ । ନାୟକ ତା' ପ୍ରତି ରୁଷ୍ଟ ହେଲେ ମଧ୍ୟ ସେ ରାଗି ନ ଥାଏ । କେବଳ ଯାହା କାନ୍ଦିଥାଏ । ସେ କୋମଳାଙ୍ଗୀ, ମାନିନୀ । ଆଳଙ୍କାରିକ ବିଶ୍ୱନାଥ ମୁଗ୍‌ଧା ନାୟିକାର ୫ ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି ; ଯଥା - ପ୍ରଥମ ଅବତୀର୍ଣ୍ଣ ଯୌବନା, ପ୍ରଥମ ଅବତୀର୍ଣ୍ଣ ମଦନ ବିକାରା, ରତିବାମା, ମାନମୃଦୁ, ସମାଧିକ ଲଜ୍ଜାବତୀ ।

ମଧ୍ୟା ହେଉଛି ସ୍ୱକୀୟା ନାୟିକାର ଦ୍ୱିତୀୟ ଭେଦ । ସେ ପୂର୍ଣ୍ଣଯୌବନା । ଯୌବନ ଏବଂ କାମବାସନା ଉଭୟରେ ସେ ପୂର୍ଣ୍ଣତା ପ୍ରାପ୍ତ । ବିଶ୍ୱନାଥ 'ମଧ୍ୟା'ର ୫ ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି ; ଯଥା - ବିଚିତ୍ର ସୁରତା, ପ୍ରରୂଢ଼ସମରା, ପ୍ରରୂଢ଼ ଯୌବନା, ଈଷଦ୍ ପ୍ରଗଲ୍‌ଭବଚନା, ମଧ୍ୟମବ୍ରୀଡ଼ିତା । ନାୟକର ପ୍ରତିକୂଳ ଆଚରଣରେ ମଧ୍ୟା କ୍ରୋଧ ପ୍ରକାଶ କରିଥାଏ । ଏହି ଅବସ୍ଥାର ତିନି ପ୍ରକାର ରୂପ ଥାଏ ; ଯଥା - ଧୀରା, ଅଧୀରା ଏବଂ ଧୀରାଧୀରା । ଧୀରାମଧ୍ୟମା ନାୟିକା କ୍ରୋଧ ପ୍ରକାଶ କରିଥାଏ ଏବଂ ନାୟକକୁ ଦୁଃଖ ଦେଇଥାଏ । ଅଧୀରାମଧ୍ୟା କଟୁ କଥା ଶୁଣାଇଥାଏ, କାନ୍ଦିଥାଏ । ଧୀରାଧୀରାମଧ୍ୟା ନାୟକକୁ ଗାଳି ଦେଇଥାଏ ଏବଂ ରୋଦନ କରିଥାଏ ।

ପ୍ରୌଢ଼ା ନାୟିକାକୁ ମଧ୍ୟ ପ୍ରଗଲ୍‌ଭା କୁହାଯାଇଥାଏ । ଏହି ପ୍ରକାର ନାୟିକା ଭିତରେ ଯୌବନର ଉତ୍ତାଳ ତରଙ୍ଗ ଅହରହ ଲହଡ଼ି ଭାଙ୍ଗୁଥାଏ । କାମ ଭାବନାରେ ସେ ଉବୁଟୁବୁ ହେଉଥାଏ । ଲଜ୍ଜା ବୋଲି ଜିନିଷ ତା' ପାଖରେ ନ ଥାଏ । ବିଶ୍ୱନାଥ ପ୍ରଗଲ୍‌ଭା ନାୟିକାର ଛ' ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି ; ଯଥା - ସ୍ମରାନ୍ଧା, ଗାଢ଼ତାରୁଣ୍ୟା, ସମସ୍ତରତକୋବିଦା, ଭାବୋନ୍ନତା, ଦରବ୍ରୀଡ଼ା, ଆକ୍ରାନ୍ତନାୟିକା । ନାୟିକା ପ୍ରତି ନାୟକର ପ୍ରତିକୂଳ ଆଚରଣକୁ ଆଖି ଆଗରେ ରଖି ପ୍ରଗଲ୍‌ଭା ନାୟିକାର ମଧ୍ୟ ତିନିପ୍ରକାର ଭେଦ ନିର୍ଣ୍ଣୟ କରାଯାଇଛି ; ଯଥା - ଧୀରା, ଅଧୀରା ଏବଂ ଧୀରାଧୀରା । ପ୍ରଗଲ୍‌ଭାର ଏହି ତିନିଭେଦର ମଧ୍ୟ ଆଉ ଦୁଇପ୍ରକାର (ପ୍ରତ୍ୟେକର) ଭେଦ ନିର୍ଣ୍ଣୟ କରାଯାଇଛି ; ଯଥା - ଜ୍ୟେଷ୍ଠା ଏବଂ କନିଷ୍ଠା । ନାୟକର ପ୍ରଥମ ପତ୍ନୀ ଜ୍ୟେଷ୍ଠା ଏବଂ ତାଙ୍କର ନୂତନ ପ୍ରେମିକାକୁ କନିଷ୍ଠା କୁହାଯାଏ । ରତ୍ନାବଳୀ ନାଟିକାରେ ବାସବଦତ୍ତା ହେଉଛି ଜ୍ୟେଷ୍ଠା, କିନ୍ତୁ ସାଗରିକା ହେଉଛି କନିଷ୍ଠା । ମଧ୍ୟାନାୟିକା ଛ' ପ୍ରକାର, ପ୍ରଗଲ୍‌ଭା ଛ' ପ୍ରକାର ଏବଂ ମୁଗ୍‌ଧା ଗୋଟିଏ ପ୍ରକାରର, ଏହିପରି ସର୍ବମୋଟ ୧୩ ପ୍ରକାରର ସ୍ୱକୀୟା ନାୟିକା ଥାଆନ୍ତି ।

**ପରକୀୟା** - ପରକୀୟା ନାୟିକାକୁ ମଧ୍ୟ ଅନ୍ୟା କୁହାଯାଏ । ଏହି ନାୟିକା ପୁଣି ଦୁଇ ପ୍ରକାରର ଯଥା - ଅନୂଢ଼ା କନ୍ୟା (ଅବିବାହିତା) ଏବଂ ଅନ୍ୟୋଢ଼ା ବା ଅନ୍ୟର

ବିବାହିତା ପତ୍ନୀ । ନୀତି ଦୃଷ୍ଟିରୁ ଅନ୍ୟର ପତ୍ନୀ ବା ଅନ୍ୟୋଢ଼ାକୁ ପ୍ରେମ କରିବା ଶାସ୍ତ୍ର ବର୍ଜ୍ଜିତ । ନାଟକ ବା ରୂପକରେ ଏପରି ଉଦାହରଣ ନୀତିବିରୁଦ୍ଧ । ତେବେ ସଂସ୍କୃତର ମୁକ୍ତକରେ ଏପ୍ରକାର ନାୟିକାକୁ ପ୍ରେମ ନିବେଦନ କରିବାର ଅନେକ ଦୃଷ୍ଟାନ୍ତ ରହିଛି । ଅନୂଢ଼ା କନ୍ୟା ପ୍ରତି ପ୍ରେମ ନିବେଦନ ଆଦୌ ନୀତିଗର୍ହିତ ନୁହେଁ । ଏହି ଧରଣର ନାୟିକା ହେଉଛି -ଶକୁନ୍ତଳା । ଏଠାରେ କନ୍ୟା ପ୍ରତି ପ୍ରଦର୍ଶିତ ଅନୁରାଗ ହେଉଛି ଅଙ୍ଗୀରସ ।

**ସାମାନ୍ୟା ବା ଗଣିକା** - ନାୟିକାର ତୃତୀୟ ପ୍ରକାର ହେଉଛି ଗଣିକା ବା ସାମାନ୍ୟା । ଏହାକୁ ମଧ୍ୟ ସାଧାରଣ କହନ୍ତି । ଗଣିକା ମଧ୍ୟ ତିନି ପ୍ରକାର ଥା'ନ୍ତି ; ଯଥା - କଳାଚତୁର, ପ୍ରଗଲ୍‌ଭ ଏବଂ ଧୂର୍ତ୍ତ । ପ୍ରେମ ସହିତ ଏପ୍ରକାର ନାୟିକାର କୌଣସି ସମ୍ପର୍କ ନ ଥାଏ । ଧନ ଅଛି ତ ସବୁ ଅଛି । ଗୁଣୀଲୋକକୁ ସେ ପ୍ରେମ କରେ ନାହିଁ, କିମ୍ବା ଗୁଣହୀନ ବ୍ୟକ୍ତିକୁ ଘୃଣା କରେ ନାହିଁ । କେତେକ ପ୍ରକରଣ, ପ୍ରକରଣିକା, ଭାଣ ଆଦିରେ ଗଣିକାକୁ ମଧ୍ୟ ନାୟିକାର ସମ୍ମାନ ଦିଆଯାଇଛି । ନାୟକ ପ୍ରତି ଗଣିକା ଅନୁରକ୍ତ ହେବାର ଚିତ୍ର ମଧ୍ୟ କେତେକ ରୂପକରେ ଦେଖାଯାଏ । 'ମୃଚ୍ଛକଟିକ'ର ନାୟିକା ବସନ୍ତସେନା ଗଣିକା ଅଟେ । ଗଣିକାର ପ୍ରେମରେ ଶୃଙ୍ଗାର ନ ଥାଏ ।

ନାୟିକାର ଅନ୍ୟ ଏକ ପ୍ରକାରର ଶ୍ରେଣୀବିଭାଗ ମଧ୍ୟ ରହିଛି । ନାୟିକାର ଦଶାକୁ ଆଧାର କରି ଏ ପ୍ରକାର ଭେଦ ନିର୍ଣ୍ଣୟ କରାଯାଇଛି । ଉପରୋକ୍ତ ୧୬ ପ୍ରକାର ନାୟିକାଙ୍କର ପ୍ରତ୍ୟେକର ଆଠ ଆଠ ପ୍ରକାର ଭେଦ ରହିଛି । ଏ ଆଠ ପ୍ରକାର ଭେଦ ହେଉଛି ; ଯଥା - ସ୍ୱାଧୀନପତିକା, ବାସକସଜ୍ଜା, ବିରହୋତ୍କଣ୍ଠିତା, ଖଣ୍ଡିତା, କଳହାନ୍ତରିତା, ବିପ୍ରଲବ୍‌ଧା, ପ୍ରୋଷିତପ୍ରିୟା ଏବଂ ଅଭିସାରିକା ।

**୧. ସ୍ୱାଧୀନପତିକା** - ଏହି ପ୍ରକାର ନାୟିକାକୁ ମଧ୍ୟ ସ୍ୱାଧୀନଭର୍ତ୍ତୃକା କୁହାଯାଏ । ଏପ୍ରକାର ନାୟିକା ଅଧୀନରେ ନାୟକ ଥାଏ । ନାୟକ ସଦା ପାଖରେ ଥିବାରୁ ଏହି ନାୟିକା ସବୁବେଳେ ପ୍ରସନ୍ନ ଥିବା ଦେଖାଯାଏ । ଏପ୍ରକାର ନାୟିକାର ପ୍ରେମରଜ୍ଜୁରେ ନାୟକ ବାନ୍ଧି ହୋଇଥାଏ ।

**୨. ବାସକସଜ୍ଜା** - ପ୍ରେମ ନିବେଦନ ପୂର୍ବରୁ ଯେଉଁ ନାୟିକା ହର୍ଷୋଦ୍‌ଫୁଲ୍ଲିତ ଚିତ୍ତରେ ନିଜକୁ ସଜାଇଥାଏ, ତାକୁ ବାସକସଜ୍ଜା କହନ୍ତି । ନାୟକ ବା ପ୍ରିୟ ଆଗମନର ନିଶ୍ଚିତ ସୂଚନା ସେ ପାଇଥାଏ । ଏଣୁ ସଖୀମାନେ ତାକୁ ସଜାଇ ମହଲକୁ ପଠାଇଥାନ୍ତି । ଏହି ପ୍ରକାର ନାୟିକା ନିଜକୁ ସଜାଇବା ସହିତ ମହଲକୁ ମଧ୍ୟ ସଜାଇଥାଏ ।

**୩. ବିରହ ଉତ୍କଣ୍ଠିତା** - ଯେଉଁ ନାୟିକାକୁ ଜବାବ ଦେଇ କୌଣସି କାରଣବଶତଃ ନାୟକ ବା ପ୍ରିୟ ଠିକ୍ ସମୟରେ ନ ଆସି ନିରାଶ କରିଥାଏ, ସେ ପ୍ରକାର ନାୟିକାକୁ ବିରହୋତ୍କଣ୍ଠିତା କୁହାଯାଏ । ନାୟିକା ଭଲଭାବେ ଜାଣେ ଯେ ତାର ନାୟକ ଠକ ନୁହେଁ । କେବଳ ବିଳମ୍ବ ପାଇଁ ସେ ଉତ୍କଣ୍ଠାର ସହିତ ନାୟକର ପ୍ରତୀକ୍ଷା କରେ ।

୪. **ଖଣ୍ଡିତା** - ଖଣ୍ଡିତା ନାୟିକାର ନାୟକକୁ ଧୃଷ୍ଟ ମଧ କୁହାଯାଇଥାଏ । ଏହି ଧୃଷ୍ଟତା ପାଇଁ ନାୟିକା ଖଣ୍ଡିତା ହୋଇଥାଏ । ଯେତେବେଳେ ନାୟିକାକୁ, ନାୟକର ଅନ୍ୟ ନାୟିକା ପାଖକୁ ଯିବାକଥା ମାଲୁମ୍ ପଡ଼େ ବା ନାୟକ ଦେହରେ ସେଭଳି କିଛି ସଙ୍କେତ ବା ଚିହ୍ନ ସେ ଦେଖିବାକୁ ପାଏ, ସେତେବେଳେ ସେ ଈର୍ଷାରେ ଜଳିଯାଏ, ଏ ପ୍ରକାର ନାୟିକାକୁ ଖଣ୍ଡିତା କହନ୍ତି ।

୫. **କଳହାନ୍ତରିତା** - ନାୟକର ଦୋଷତ୍ରୁଟିକୁ ଏହି ପ୍ରକାର ନାୟିକା ଜାଣିଗଲା ପରେ ତା' ପ୍ରତି ରୁକ୍ଷ ହୋଇଉଠେ । ତାର କ୍ରୋଧ ଆଦୌ ପ୍ରଶମିତ ହୁଏ ନାହିଁ । ନାୟକର ଅନୁନୟ ତା'ଠାରେ ନିଷ୍ଫଳ ହୁଏ । ସେ ନାୟକକୁ ହତାଦର ବା ତିରସ୍କାର କରେ । ନାୟକ ଚାଲିଗଲା ପରେ ଏ ପ୍ରକାର ନାୟିକା ପଶ୍ଚାତ୍ତାପରେ ଘାରି ହୁଏ ।

୬. **ବିପ୍ରଲବ୍ଧା** - ଠିକଣା ଦେଇ ଠିକଣା ସମୟରେ ଯଦି ପ୍ରିୟ ନ ପହଞ୍ଚେ, ତେବେ ସେଠି ନାୟିକା ଅପମାନିତ ବୋଧ କରେ । ତାକୁ ବିପ୍ରଲବ୍ଧା କହନ୍ତି । ପୂର୍ବରୁ ଦେଇଥିବା ସୂଚନା ଅନୁସାରେ ଉଚିତ ସମୟରେ ନାୟକ ନ ପହଞ୍ଚିବାରୁ ନାୟିକା କ୍ଷୁବ୍ଧ ହୁଏ । ନାୟିକା ସଙ୍କେତସ୍ଥଳକୁ ଯାଇ ନିରାଶ ହୁଏ । ସେ ନିଜକୁ ଠକିଲା ପରି ମନେକରେ । ଏପ୍ରକାର ନାୟିକା ହେଉଛି ବିପ୍ରଲବ୍ଧା ।

୭. **ପ୍ରୋଷିତ ଭର୍ତ୍ତୃକା** - ଯେଉଁ ନାୟିକାର ପ୍ରିୟ କୌଣସି କାର୍ଯ୍ୟବଶତଃ ଦୂରଦେଶକୁ ଚାଲିଯାଏ, ତାର ଫେରିବାରେ ବିଳମ୍ବ ହୁଏ, ତାକୁ ପ୍ରୋଷିତଭର୍ତ୍ତୃକା କହନ୍ତି । ଏହି ନାୟିକାକୁ ମଧ ପ୍ରୋଷିତପ୍ରିୟା କୁହାଯାଏ । ଅତୀତ, ବର୍ତ୍ତମାନ, ଭବିଷ୍ୟତ ତିନିପ୍ରକାର ପ୍ରୋଷିତପ୍ରିୟା ନାୟିକା ଦେଖାଯାନ୍ତି ।

୮. **ଅଭିସାରିକା** - ଯେଉଁ ନାୟିକା କାମ ବଶୀଭୂତ ହୋଇ ନାୟକର ଡାକରାରେ କିମ୍ବା ନିଜ ଇଚ୍ଛାରେ ସଂକେତସ୍ଥଳକୁ ଯାଏ, ତାକୁ ଅଭିସାରିକା କହନ୍ତି । ଅଭିସାରିକାର ଅଭିସରଣ ସ୍ଥଳଗୁଡ଼ିକ ହେଉଛି - ବଗିଚା, ଭଙ୍ଗାମନ୍ଦିର, ଭଙ୍ଗାଘର, ନଦୀକୂଳ, ଶ୍ମଶାନ, ଜଙ୍ଗଲ, କ୍ଷେତ, ନିର୍ଜନ ସ୍ଥାନ ଆଦି । ଅଭିସାରିକା ମଧ ଦୁଇ ଶ୍ରେଣୀର ; ଯଥା - ଦିବା ଅଭିସାରିକା ଏବଂ ନିଶି ଅଭିସାରିକା । ନିଶିଅଭିସାରିକା ପୁଣି ଶୁକ୍ଳାଭିସାରିକା ଏବଂ କୃଷ୍ଣାଭିସାରିକା ନାମରେ ଦ୍ୱିବିଧ ।

ଏହିପରି ନାୟିକାର ଷୋହଳ ଭେଦ, ପୁଣି ଆଠ ଆଠ ଭେଦ ଅନୁସାରେ ୧୨୮ ପ୍ରକାରର ହୋଇଥାଏ । ଏ ନାୟିକା ପୁଣି ଉତ୍ତମ, ମଧ୍ୟମ, ଅଧମ ଭେଦରେ ଅର୍ଥାତ୍ ୧୨୮ X ୩ = ୩୮୪ ପ୍ରକାରର ହୋଇଥାନ୍ତି । ପ୍ରାଚୀନ ଆଚାର୍ଯ୍ୟଗଣ ଏ ୩୮୪ ପ୍ରକାରକୁ ସ୍ୱୀକାର କରିଛନ୍ତି । ପୂର୍ବରୁ ବର୍ଣ୍ଣିତ ନାୟିକାର ଭେଦକୁ ଏକ ଗ୍ରାଫ୍ ସାହାଯ୍ୟରେ ଦେଖାଇ ଦିଆଯାଇପାରେ ।




## ପାର୍ଶ୍ୱଚରିତ୍ର

**ସୂତ୍ରଧର** - ନାଟକରେ ସୂତ୍ରଧରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦର୍ଶକମାନଙ୍କ ପାଇଁ ସେ ହେଉଛି ସଂଯୋଗ ସେତୁ । ନାଟକ ବିଷୟରେ ସେ ସୂଚନା ଦେଇଥାନ୍ତି । ନାନ୍ଦୀପାଠ ପରେ ପରେ ବସ୍ତୁ, ଚରିତ୍ର ଏବଂ ରସକୁ ଗୋଟିଏ ସୂତ୍ରରେ ବାନ୍ଧି ସଂକ୍ଷେପରେ ସୂତ୍ରଧରହିଁ ସୂଚନା ଦେଇଥାଏ । ଯେ ସମସ୍ତ କଳାରେ ଚତୁର, ନେତା-ବସ୍ତୁ-ତଥା ଲେଖକ ପରିଚୟ ସଂକ୍ଷେପରେ ଦେଇଥାଏ, ଶାରଦାତନୟ ତାଙ୍କୁ ସୂତ୍ରଧର କହିଛନ୍ତି । ସୂତ୍ରଧର ମଧ୍ୟ ବାଦ୍ୟ ବାଦନ କରିବାରେ ନିପୁଣ । ସେ ମଧ୍ୟ ବକ୍ତା, ମଧୁରଭାଷୀ । ଗୀତ ତାଳ ଏବଂ ଲୟ ବିଷୟରେ ସେ ଭଲଭାବେ ଜାଣନ୍ତି ।

**କୁଶୀଲବ** - ଯେଉଁମାନେ ଅନେକ ପ୍ରକାର ଭୂମିକା ନିର୍ବାହ କରିଥାନ୍ତି, ନାଟକରେ ସେମାନଙ୍କୁ କୁଶୀଲବ କୁହାଯାଏ । ଏମାନେ ନାଟକର ସଂଳାପ ଉଚ୍ଚାରଣ ତଥା ଆଙ୍ଗିକ ଅଭିନୟରେ ବେଶ୍ କୁଶଳ ହୋଇଥିବାରୁ ଏମାନଙ୍କୁ କୁଶୀଲବ କୁହାଯାଏ ।

**ଭରତ** - ଯେଉଁ ବ୍ୟକ୍ତି ଅନେକ ସ୍ୱଭାବର ହୋଇଥାନ୍ତି । ସଂସାରର ବିଭିନ୍ନ ଭାବକୁ ବିଚିତ୍ର ବେଶ ଧାରଣ କରି ପ୍ରକାଶ କରନ୍ତି, ତାଙ୍କୁ ଭରତ କୁହାଯାଏ । ଯେଉଁ ବ୍ୟକ୍ତି ବିଭିନ୍ନ ବର୍ଣ୍ଣ ଏବଂ ଭାଷାକୁ ଆୟତ୍ତ କରିଥାନ୍ତି, ଅନ୍ୟମାନଙ୍କର ପ୍ରକୃତି ବେଶ, କାର୍ଯ୍ୟ ତଥା ବିବିଧ ଚେଷ୍ଟାକୁ ପ୍ରଦର୍ଶନ କରିଥାନ୍ତି, ତାଙ୍କ ଭରତ କହନ୍ତି ।

**ନଟ** - ଯେଉଁ ବ୍ୟକ୍ତି ଅତୀତର କଥାକୁ ସ୍ୱାଭାବିକ ଭାବରେ ଅଭିନୟ ମାଧ୍ୟମରେ ପ୍ରକାଶ କରିଥାଏ, ତାଙ୍କୁ ନଟ କୁହାଯାଏ । ସେ ବିଭିନ୍ନ ରସ ଏବଂ ଭାବ ଦ୍ୱାରା ଅନୁପ୍ରାଣିତ ହୋଇଥାନ୍ତି । ନଟ ସୂତ୍ରଧରକୁ ସାହାଯ୍ୟ କରିଥାଏ । ସେ ତେଜସ୍ୱୀ, ରୂପବାନ୍, ମେଧାବୀ ।

ରଙ୍ଗଶାଳାର ସମସ୍ତ ବିଧାନ ବିଷୟରେ ସେ ଜାଣିଥାନ୍ତି । ପ୍ରତ୍ୟେକ କାମରେ ସେ କୁଶଳୀ । ବାଦ୍ୟକଳା ବିଷୟରେ ନଟର ଭଲ ଧାରଣା ଥାଏ । ନଟର ସ୍ତ୍ରୀକୁ ନଟୀ କୁହାଯାଏ । ସେ ମଧ୍ୟ ଅଭିନୟରେ କୁଶଳୀ, ଭାଷାରେ ବିଦୁଷୀ । ନଟର ଆଜ୍ଞାବହନ କରିଥାଏ ।

**ଶୈଳୂଷ** - ବର୍ତ୍ତମାନ କାଳରେ ଲୋକଙ୍କ ପରି ଯିଏ ବିଭିନ୍ନ ଭାବର ପ୍ରଦର୍ଶନ କରେ ତାକୁ ଶୈଳୂଷ କୁହାଯାଏ । ଭରତ, ଶୈଳୂଷ ଏବଂ ନଟ ମଧ୍ୟରେ କିଛିଟା ପାର୍ଥକ୍ୟ ଥାଏ । ନଟ କୌଣସି ପ୍ରାଚୀନ କଥା, ରସ ତଥା ଭାବ ସାଥିରେ ଅଭିନୟ କରିଥାଏ । ଭରତ କେବଳ ଅନ୍ୟର ବେଶ, କର୍ମ, ଅବସ୍ଥା, ଚେଷ୍ଟାଦିର ଅନୁକରଣ କରିଥାଏ । ତେବେ ଭାଷା, ବର୍ଣ୍ଣ ତଥା ଅନ୍ୟ ସାମଗ୍ରୀ ସାଥିରେ ଏହା ସଂଘଟିତ ହୋଇଥାଏ । ଶୈଳୂଷ ଛଡ଼ା ଯଦି କୌଣସି ବେଶ ଆଦି ଧାରଣ କରାଯାଏ, ତେବେ ସେଥିରେ ଅନ୍ୟର ଭାବର ଅନୁକରଣ ରହିବ ।

ନାଟକ ବା ରୂପକକୁ ଆଗେଇ ନେବା ପାଇଁ କିଛି କିଛି ସହାୟକ ଚରିତ୍ରର ଆବଶ୍ୟକତା ଦେଖାଦେଇଥାଏ । ଏମାନେ ନାୟକକୁ ସାହାଯ୍ୟ କରିଥାନ୍ତି । ନାୟକର ଏହି ସହାୟକମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଏମାନଙ୍କ ମଧ୍ୟରେ ପ୍ରମୁଖ ହେଉଛି ଶୃଙ୍ଗାର ସହାୟକ, ଯାହା ବିଭିନ୍ନ ଶ୍ରେଣୀର ହୋଇଥାନ୍ତି ; ଯଥା - ବିଟ, ଚେଟ, ବିଦୂଷକ, ମାଳାକାର, ରଜକ, ତମୋଲୀ, ଗାନ୍ଧୀ । ନାୟକର ଏହି ସହାୟକମାନଙ୍କ ବିଷୟରେ ଜାଣିବା ଦରକାର ।

**ପୀଠମର୍ଦ୍ଦ** - ନାୟକର ସହାୟକମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ହେଉଛନ୍ତି ପତାକାର ନାୟକ । ତାଙ୍କୁ ପୀଠମର୍ଦ୍ଦ କହନ୍ତି । ପତାକା ନାୟକ ମୁଖ୍ୟ ନାୟକଙ୍କ ଭକ୍ତ ବା ଅନୁଚର ହୋଇଥାନ୍ତି । ପୀଠମର୍ଦ୍ଦ ସଦାବେଳେ ନାୟକଠାରୁ କମ୍ ଗୁଣର ହୋଇଥାଏ । ପ୍ରଧାନ କଥାବସ୍ତୁର ନାୟକ ମୁଖ୍ୟ ନାୟକ ହୋଇଥାଏ । ପ୍ରାସଙ୍ଗିକ କଥାବସ୍ତୁର ପତାକାର ନାୟକକୁ ପୀଠମର୍ଦ୍ଦ କୁହାଯାଏ । 'ମାଳତୀମାଧବ'ରେ ପ୍ରଧାନ ନାୟକ ହେଉଛି ମାଧବ, ମାତ୍ର ପୀଠମର୍ଦ୍ଦ ହେଉଛି ମକରନ୍ଦ । ରାମାୟଣରେ ରାମଚନ୍ଦ୍ର ହେଉଛନ୍ତି ନାୟକ, ହେଲେ ସୁଗ୍ରୀବ ହେଉଛନ୍ତି ତାଙ୍କର ସହାୟକ ବା ପତାକାର ନାୟକ ବା ପୀଠମର୍ଦ୍ଦ । ସହାୟକ ଚରିତ୍ର ମୁଖ୍ୟ ଚରିତ୍ରଠାରୁ ନ୍ୟୂନ ହୋଇଥାଏ ।

**ବିଟ** - ଆଳଙ୍କାରିକ ଧନଞ୍ଜୟ କହିଛନ୍ତି - 'ଏକ ବିଦ୍ୟା ବିଟଃ' ଅର୍ଥାତ୍ ଯିଏ ଗୋଟିଏ ବିଦ୍ୟାରେ ନିପୁଣ, ସେ ହେଉଛି ବିଟ । ନାଟକ ପାଇଁ ନୃତ୍ୟ, ଗୀତ ଆଦି ବିଭିନ୍ନ ବିଦ୍ୟାର ଆବଶ୍ୟକତା ପଡ଼ିଥାଏ । ଏଥିରୁ ଯେକୌଣସି ବିଦ୍ୟାରେ ପାରଙ୍ଗମ ବ୍ୟକ୍ତିଙ୍କୁ 'ବିଟ' କହନ୍ତି । ଶାରଦାତନୟଙ୍କ ମତରେ ବିଟ ଖାଲି ବିଦ୍ୟାରେ ନିପୁଣ ହେଲେ ଚଳିବନି, ସେ କାମତନ୍ତ୍ରରେ ମଧ୍ୟ କୁଶଳୀ ହୋଇଥିବା ଆବଶ୍ୟକ । ବିଶ୍ୱନାଥ 'ବିଟ'ର ଅଧିକ ବିସ୍ତୃତ ବ୍ୟାଖ୍ୟା କରିଛନ୍ତି । ତାଙ୍କ ମତରେ, ଭୋଗବିଳାସରେ ଯିଏ ସମ୍ପତ୍ତି ଲୁଟାଏ, ଧୂର୍ତ୍ତ, ଯିଏ ନୃତ୍ୟ ଗୀତାଦି କଳା ମଧ୍ୟରୁ ଗୋଟିକୁ ଜାଣେ, ବେଶ୍ୟାର ସତ୍କାର କରିବାରେ ଯିଏ

କୁଶଳ, କଥାବାର୍ତ୍ତାରେ ଯିଏ ଚତୁର, ଯିଏ ମଧୁରଭାଷୀ ଏବଂ ଗୋଷ୍ଠୀଦ୍ୱାରା ଆଦର ଅଭ୍ୟର୍ଥନା ପାଇଥାଏ, ସେହି ବ୍ୟକ୍ତିକୁ ବିଟ କୁହାଯାଏ । ବିଟ ଧୂର୍ତ୍ତ ସ୍ୱଭାବର ଅଟେ । ସମ୍ଭୋଗ ବିଷୟରେ ସେ ଅଜ୍ଞ । ବେଶବିନ୍ୟାସରେ ସେ ପାରଙ୍ଗମ । ସେ କୌଣସି ପୁରୁଷ ବା ସ୍ତ୍ରୀ ସହଚର ଭାବେ ଆସିଥାଏ ।

**ବିଦୂଷକ** - ହାସ୍ୟରସ ପରିବେଷଣକାରୀ ଚରିତ୍ର ହେଉଛି ବିଦୂଷକ । ତାର କଥାବାର୍ତ୍ତା ବେଶବିନ୍ୟାସ, ଅଙ୍ଗଭଙ୍ଗୀ  ଆଦି ହାସ୍ୟ ଉଦ୍ରେକ କରିଥାଏ । ଅନ୍ୟକୁ ଆନନ୍ଦ ଦେବାରେ ତାର ଖୁସି । ହାସ୍ୟ ବ୍ୟଙ୍ଗ ମାଧ୍ୟମରେ ସେ ମନୋରଞ୍ଜନ କରିଥାଏ । ସେ ନାୟକର ଅନ୍ତରଙ୍ଗ । ବିଦୂଷକ ଜାତିରେ ବ୍ରାହ୍ମଣ । ତାର କେଶ ଏବଂ ଚକ୍ଷୁ ପିଙ୍ଗଳ ବର୍ଣ୍ଣର । ସେ ପ୍ରାକୃତ ଭାଷାରେ କଥାବାର୍ତ୍ତା କରିଥାଏ ।

ନାଟକରେ ସବୁ ପାତ୍ର ବିଦୂଷକକୁ ଭଲ ପାଇଥାନ୍ତି । ତେବେ ସେ ସଦାସର୍ବଦା ରାଜା ବା ନାୟକକୁ ସମର୍ଥନ କରିଥାଏ । ନାୟକ ବା ରାଜାର ଗୁପ୍ତପ୍ରେମ ବ୍ୟାପାରରେ ସେ ସହାୟତା କରିଥାଏ । ସେ ସଦାବେଳେ ଚଞ୍ଚଳ ବା କାର୍ଯ୍ୟବ୍ୟସ୍ତ ରହେ । The Theatre of the Hindus ପୁସ୍ତକ୍‌ରେ (ପୃ-୩୧) ଏଚ.ଏଚ. ଉଇଲସନ ବିଦୂଷକ ସମ୍ପର୍କରେ ଲେଖିଛନ୍ତି - 'He bears more affinity to Sancho Panza, perhaps than any other character in Western fiction, imitating him in his combination of shrewdness and sincerity, his fondness for good living and his love of ease. In the dramas of intrigue, he exhibits some of the talents of mercury, but with less activity and ingenuity, and occasionally suffers by his interference.

**ଶକାର** - ମୂର୍ଖ, ମଦାନ୍ଧ, ନୀଚକୁଳଜାତ, ଘମଣ୍ଡୀ, ବିତ୍ତଶାଳୀ, ଅବିବାହିତା ସ୍ତ୍ରୀର ଭାଇକୁ ଶକାର କୁହାଯାଏ । ସେ ଖୁବ୍ ଶୀଘ୍ର ରାଗିଯାଏ । ପୁଣି ଖୁବ୍ ଶୀଘ୍ର ପ୍ରସନ୍ନ ମଧ୍ୟ ହୋଇଥାଏ । ନିଜ ପଦବୀ ପାଇଁ ସେ ଗର୍ବ ଅନୁଭବ କରେ । ମାତ୍ର ଅଯୋଗ୍ୟତା ଏବଂ ଭ୍ରଷ୍ଟାଚାର କାରଣ ଯୋଗୁଁ ସେ ନିଜ ପଦବୀର ସଦ୍‌ବ୍ୟବହାର କରିପାରେନା । ସଂସ୍କୃତ ନାଟକରେ 'ଶକାର' ଏକରକମ ଲୋପ ପାଇଯାଇଛି କହିଲେ ଚଳେ । ମୃଚ୍ଛକଟିକ ନାଟକରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । 'ଶକାର' 'ଶ' ଅକ୍ଷରର ଅଧିକ ପ୍ରୟୋଗ କରିଥାଏ । କାରଣ ଶକାରୀ ଭାଷାରେ ଏହି ଅକ୍ଷରର ପ୍ରୟୋଗ ଅଧିକ । ଏଣୁ ତାକୁ 'ଶକାର' କୁହାଯାଏ ।

**ଚେଟ** - ଭରତ 'ଚେଟ' ଭିତରେ କେତେକ ବିଶେଷତ୍ୱର ଉଲ୍ଲେଖ କରିଛନ୍ତି । ସେ କଳାପ୍ରିୟ ତଥା ମାନ୍ୟାମାନ୍ୟ ବିଶେଷଜ୍ଞ । ଆଳଂକାରିକ ବିଶ୍ୱନାଥ କେବଳ ନାମଟି ଉଚ୍ଚାରଣ କରି ଛାଡ଼ିଦେଇଛନ୍ତି ।

କଞ୍ଚୁକୀ - ବୃଦ୍ଧ ବ୍ରାହ୍ମଣକୁ କଞ୍ଚୁକୀ କୁହାଯାଏ । ତାର ଜୀବନକାଳ ରାଜାଙ୍କ ସେବାରେ କଟିଯାଏ । ତାର ଶରୀର ବୃଦ୍ଧ ହେଲେ ମଧ ମନ ଏବଂ ବୁଦ୍ଧି ବେଶ୍ ପ୍ରଖର । ସେ ରାଜାଙ୍କ ଆଦେଶକୁ ଅନ୍ତଃପୁରରେ ପହୁଞ୍ଚାଇଥାଏ । କଞ୍ଚୁକୀର କେତେକ ବୈଶିଷ୍ଟ୍ୟ ହେଲା, ସେ ବିଦ୍ୟା-ସତ୍ୟ-ସମ୍ପନ୍ନ । ସେ ଦୋଷରହିତ ମଧ ହୋଇଥାଏ ।

ଦୂତ -କୌଣସି କାର୍ଯ୍ୟରେ ବା ସନ୍ଦେଶ ନେଇ ଦୂତ ପ୍ରାୟତଃ ଯାଇଥାଏ । ରାଜାର ପ୍ରେମଠାରୁ ଆରମ୍ଭ କରି ଗମ୍ଭୀର କାର୍ଯ୍ୟ ପର୍ଯ୍ୟନ୍ତ ସବୁଠି ସେ ଦରକାର ହୋଇଥାଏ । ସେ ବିଶ୍ୱସ୍ତ, ସାହସୀ, ସ୍ମରଣଶକ୍ତିସମ୍ପନ୍ନ ହେବା ଆବଶ୍ୟକ । ଦୂତକୁ ଯେତିକି କୁହାଯାଇଥାଏ, ସେ ସେତିକି କହିଥାଏ । ସେ ସନ୍ଦେଶବାହକ । ସାହିତ୍ୟ ଦର୍ପଣରେ ଦୂତର ତିନିପ୍ରକାର ଭେଦ ରହିଛି । ବେଳେବେଳେ କୌଣସି ବିଶେଷ କାର୍ଯ୍ୟରେ ତାର ପୂର୍ଣ୍ଣ ଅଧିକାର ଥାଏ । ପ୍ରେରକର ମନୋଭାବକୁ ସେ ଠିକ୍‌ଭାବେ ଉପସ୍ଥାପିତ କରିଥାଏ । ବେଳେବେଳେ ଦୂତ ସୀମିତ କାର୍ଯ୍ୟ ସମ୍ପାଦନ କରିଥାଏ ।

## ନାଟ୍ୟବୃତ୍ତି

ବୃତ୍ତି ହେଉଛି ସେହି ଅଭିପ୍ରାୟ, ଯାହା ନାୟକକୁ ଏକ ବିଶେଷ ଦିଗରେ ପ୍ରବୃତ୍ତ କରିଥାଏ । ଧନଞ୍ଜୟଙ୍କ ମତରେ, ନାଟକର ବ୍ୟାପାରର ଅନୁକୂଳ ହେଉଛି ବୃତ୍ତି । ସେ ନାୟକ ପରେ ପରେ ବୃତ୍ତିର ବର୍ଣ୍ଣନା କରିଛନ୍ତି । ବିଶ୍ୱନାଥଙ୍କ ମତରେ ନାୟକ-ନାୟିକାଙ୍କ ବ୍ୟାପାର ବିଶେଷକୁ ନାଟକୀୟ ବୃତ୍ତି କୁହାଯାଏ । ବୃତ୍ତିର ସାଧାରଣ ଅର୍ଥ କାମ ବା ଢଙ୍ଗ । ନାଟ୍ୟଶାସ୍ତ୍ରରେ ନାୟକ ନାୟିକାଙ୍କ ବିଶେଷ ପ୍ରକାର ଢଙ୍ଗକୁ ବୃତ୍ତି କୁହାଯାଇଛି । ସାହିତ୍ୟର ସାଧାରଣତଃ ତିନି ପ୍ରକାର ଅଙ୍ଗ ଥାଏ ; ଯଥା - ପ୍ରବୃତ୍ତି, ବୃତ୍ତି ଏବଂ ରୀତି । ବିଶେଷ ପ୍ରକାର ବେଶ ରଚନାକୁ ପ୍ରବୃତ୍ତି, ବିଳାସ ପ୍ରଦର୍ଶନକୁ ବୃତ୍ତି, ବଚନଚାତୁରୀକୁ ରୀତି କହନ୍ତି । ସାହିତ୍ୟ ଦର୍ପଣର ଟୀକାକାର ତର୍କବାଗୀଶଙ୍କ ମତରେ, ଯାହା ରସ ଆସ୍ୱାଦନର ପ୍ରଧାନ କାରଣ, ତାହାହିଁ ବୃତ୍ତି । ଚାରି ପ୍ରକାର ଅଭିନୟର ପ୍ରସଙ୍ଗ ଅନୁକୂଳ ଦୃଶ୍ୟ ପ୍ରଦର୍ଶନର ବିଶେଷତ୍ୱକୁ ବୃତ୍ତି କହନ୍ତି । ଏହା ନାଟକୀୟ ରସ ଅନୁଭୂତିର ମୁଖ୍ୟ ସହାୟକ ।

ଭରତଙ୍କ ମତରେ, ବୃତ୍ତି ହେଉଛି ନାଟ୍ୟର ମାତାସଦୃଶ । ଏହି ବୃତ୍ତି ସଂଖ୍ୟା ହେଉଛି ଚାରି ; ଯଥା - ଭାରତୀ, କୈଶିକୀ, ସାତ୍ୱତୀ ଏବଂ ଆରଭଟୀ । ଏହି ବୃତ୍ତିଗୁଡ଼ିକୁ ଆଧାର କରି ବିଭିନ୍ନ ପ୍ରକାର ନାଟକ ରଚିତ ହୋଇଥାଏ । ଗ୍ରୀକ୍‌ର ଟ୍ରାଜେଡ଼ି, କମେଡ଼ି ମଧ ଦୁଇଟି ବୃତ୍ତିକୁ ଆଧାର କରି ରଚିତ ହୋଇଛି । ଚାରୋଟି ବୃତ୍ତି ମଧ୍ୟରୁ ଭାରତୀ ବୃତ୍ତି ହେଉଛି ଶବ୍ଦ ବୃତ୍ତି ଏବଂ ଅନ୍ୟ ତିନୋଟି ବୃତ୍ତି ହେଉଛନ୍ତି ଅର୍ଥବୃତ୍ତି । ଶବ୍ଦବୃତ୍ତିରେ ବାଚିକ ଅଭିନୟ ସ୍ଥାନ ପାଇଥାଏ । ଅନ୍ୟ ବୃତ୍ତିରେ ନୃତ୍ୟ, ଗୀତ, ବାଦ୍ୟ ତଥା ରସ ଅନୁରୂପ ଭାବ ଏବଂ

ଦୃଶ୍ୟର ପ୍ରଦର୍ଶନ କରାଯାଇଥାଏ । ଋଗ୍‌ବେଦରୁ ଭାରତୀ ବୃତ୍ତି, ଯଜୁର୍ବେଦରୁ ସାତ୍ୱତୀ ବୃତ୍ତି, ସାମବେଦରୁ କୈଶିକୀ ବୃତ୍ତି, ଅଥର୍ବବେଦରୁ ଆରଭଟୀ ବୃତ୍ତିର ଉତ୍ପତ୍ତି ହୋଇଥିବା ଜଣାଯାଏ ।

## ଭାରତୀ ବୃତ୍ତି

ଭରତଙ୍କ ମତରେ ସ୍ତ୍ରୀମାନେ ଏହି ବୃତ୍ତିର ପ୍ରୟୋଗ କରିପାରିବେ ନାହିଁ । କେବଳ ପୁରୁଷମାନେ ହିଁ ସଂସ୍କୃତର ପ୍ରୟୋଗ କରିପାରିବେ । ନଟକୁ ଭରତ କୁହାଯାଏ । ଭରତଙ୍କ ଦ୍ୱାରା ଏହା ପ୍ରଯୁକ୍ତ ହୋଇଥିବାରୁ, ତାହାକୁ ଭାରତୀ ବୃତ୍ତି କହନ୍ତି । ଧନଞ୍ଜୟଙ୍କ ମତରେ ନଟଦ୍ୱାରା ପ୍ରଯୁକ୍ତ ସଂସ୍କୃତ ଭାଷାର ବାଗବ୍ୟାପାରକୁ ଭାରତୀ ବୃତ୍ତି କହନ୍ତି । ବିଶ୍ୱନାଥଙ୍କ ମତରେ, ସଂସ୍କୃତବହୁଳ ବାଗ୍‌ବ୍ୟାପାର ଯେଉଁ ନରକୁ ଆଶ୍ରୟ କରି ଗଢ଼ି ଉଠିଥାଏ (ନାରୀର ନୁହେଁ) ତାହାକୁ ଭାରତୀ ବୃତ୍ତି କହନ୍ତି । ଭାରତୀ ବୃତ୍ତି ହେଉଛି ରୂପକ ରଚନାର ଏକ ବିଶେଷ ଶୈଳୀ । ଏହାକୁ ବାଗ୍ ପ୍ରୟୋଗର ବିଶେଷତ୍ୱ କୁହାଯାଏ, ଯାହାର ପ୍ରୟୋଗ ନଟ ବା ଭରତ କରନ୍ତି । ଏଥିରେ ସଂସ୍କୃତ ବାକ୍ୟବହୁଳ ଭାବେ ଦେଖାଯାଏ । ଏହାର ବାକ୍ ପ୍ରୟୋଗରେ ନଟୀର ସ୍ଥାନ ନାହିଁ ।

ଭାରତୀ ବୃତ୍ତିର ଚାରୋଟି ଭେଦ ରହିଛି ; ଯଥା - ପ୍ରରୋଚନା, ବୀଥୀ, ପ୍ରହସନ ଏବଂ ଆମୁଖ । ପ୍ରସ୍ତୁତ ବିଷୟର ପ୍ରଶଂସା କରି ଦର୍ଶକର ଉତ୍କଣ୍ଠା ବଢ଼ାଇବା କାର୍ଯ୍ୟକୁ ପ୍ରରୋଚନା କହନ୍ତି । ପାରମ୍ପରିକ ବାର୍ତ୍ତାଳାପଦ୍ୱାରା ମୁଖ୍ୟ ନାଟକୀୟ ବସ୍ତୁକୁ ଆରମ୍ଭ କରିବାକୁ ଆମୁଖ କୁହାଯାଏ । ଏ ଦୁଇଟି ଭେଦ ନାଟକର ପ୍ରସ୍ତାବନା ସହିତ ସମ୍ବନ୍ଧ ରଖିଥାଆନ୍ତି । ରୂପକର ଭେଦକୁ ବୀଥୀ ଏବଂ ପ୍ରହସନ କହନ୍ତି । ଭାରତୀ ବୃତ୍ତିର କି ପ୍ରକାର ସମ୍ବନ୍ଧ ବୀଥୀ ଏବଂ ପ୍ରହସନ ସହିତ ରହିଛି, ସେ ବିଷୟରେ ଆଚାର୍ଯ୍ୟଗଣ କିଛି କହି ନାହାନ୍ତି । ଆରମ୍ଭରେ ବୀଥୀ ଏବଂ ପ୍ରହସନ ଦୁହେଁ ପ୍ରସ୍ତାବନାର ଅଙ୍ଗ ଥିଲେ ବୋଲି ଅନୁମାନ କରାଯାଏ । ନାଟକ ଆଡ଼କୁ ଆକର୍ଷିତ କରିବା ପାଇଁ ଆମୁଖ ଓ ପ୍ରରୋଚନା ପ୍ରଯୁକ୍ତ ହୋଇଥାଏ । ତେବେ ବୀଥୀ ଏବଂ ପ୍ରହସନ, ମଝିରେ ବା ଶେଷରେ ଦର୍ଶକର ରୁଚିକୁ ସତେଜ କରିବା ପାଇଁ କାମ କରିଥାନ୍ତି ।

ଭାରତୀ ବୃତ୍ତିରେ ସ୍ତ୍ରୀ ପାତ୍ରର ଭୂମିକା ନାହିଁ । ଏହାର ଦୁଇଟି କାରଣ ଅଛି । ପ୍ରଥମ ହେଲା, ଭାରତୀ ବୃତ୍ତି ସଂସ୍କୃତ ପ୍ରଧାନ । ଭାରତୀୟ ନାଟ୍ୟଶାସ୍ତ୍ରରେ ନାରୀମାନଙ୍କୁ ପ୍ରାକୃତ ଭାଷା କହିବାକୁ ନିର୍ଦ୍ଦେଶ ଦିଆଯାଇଛି । ଦ୍ୱିତୀୟ କାରଣ ହେଲା, ଏଥିରେ ଦ୍ୱନ୍ଦ୍ୱ ବା ମଜା ସ୍ଥାନ ପାଇଥାଏ, ଯାହା ସ୍ତ୍ରୀମାନଙ୍କ ସାଥିରେ କରିବା ଶିଷ୍ଟତା ବିରୋଧୀ ବୋଲି ଧରାଯାଏ । ଧନଞ୍ଜୟ ତିନୋଟି ବୃତ୍ତିକୁ କ୍ରିୟାବୃତ୍ତି ଭାବେ ଗ୍ରହଣ କରିଛନ୍ତି, ତେବେ ଭାରତୀ ବୃତ୍ତିକୁ ସେ ଗ୍ରହଣ କରି ନାହାନ୍ତି । ତାଙ୍କ ମତରେ ଏହା ବାଚିକ ବୃତ୍ତି । ନାଟକୀୟ ବ୍ୟାପାର ସହିତ ଭାରତୀ ବୃତ୍ତିର କୌଣସି ସମ୍ପର୍କ ନାହିଁ ।

## କୈଶିକୀ ବୃତ୍ତି

ବିଶ୍ୱନାଥଙ୍କ ମତରେ, ମନୋରଞ୍ଜନ ନେପଥ୍ୟରେ ନାୟକାଦିଙ୍କ ବେଶରଚନାଦ୍ୱାରା ଯାହା ଚମତ୍କାରିତା ସୃଷ୍ଟି କରିଥାଏ, ସ୍ତ୍ରୀଗଣଙ୍କଦ୍ୱାରା ବ୍ୟାପ୍ତ ହୋଇ ଯାହା ନୃତ୍ୟ ଗୀତରେ ପରିପୂର୍ଣ୍ଣ, ଯାହାର ଉପଚାର କାମ ସୂକ୍ଷ୍ମ ଭୋଗକୁ ଉତ୍ପନ୍ନ କରେ, ଯାହାର ଅଙ୍ଗରୁ ଶୃଙ୍ଗାରରସର ଅଭିବ୍ୟକ୍ତି ପ୍ରକାଶିତ ହୋଇଥାଏ, ସେହି ରମଣୀୟ ବିଳାସଯୁକ୍ତ ବୃତ୍ତିକୁ କୈଶିକୀ ବୃତ୍ତି କୁହାଯାଏ । ଧନଞ୍ଜୟଙ୍କ ଅନୁସାରେ, କୈଶିକୀ ବୃତ୍ତିରେ ନୃତ୍ୟ, ଗୀତ, ବିଳାସ, କାମକ୍ରୀଡ଼ା ଆଦି ସହିତ କୋମଳ ଏବଂ ଶୃଙ୍ଗାରୀ ବ୍ୟାପାର ଯୁକ୍ତ ହୋଇଥାଏ । ଏହାର ଫଳ, କାମ ବା ପୁରୁଷାର୍ଥକୁ ବୁଝାଇଥାଏ । ଏହି ବୃତ୍ତିରେ ପୁରୁଷ ଏବଂ ସ୍ତ୍ରୀ ଦୁଇପ୍ରକାର ପାତ୍ର ଥାଆନ୍ତି । ଏଥିରେ ସାହସ, ପ୍ରେମ ଏବଂ ଆମୋଦ ପ୍ରମୋଦର ବର୍ଣ୍ଣନା ସ୍ଥାନ ପାଇଥାଏ ।

କୈଶିକୀ ବୃତ୍ତିର ଚାରୋଟି ଅଙ୍ଗ ହେଉଛି - ନର୍ମ, ନର୍ମସ୍ଫିଞ୍ଜ, ନର୍ମସ୍ଫୋଟ, ନର୍ମଗର୍ଭ । ନାୟକ ନାୟିକାଙ୍କ ଚିତ୍ତକୁ ପ୍ରସନ୍ନ କରୁଥିବା ବିଳାସପୂର୍ଣ୍ଣ ବ୍ୟାପାରକୁ ନର୍ମ କହନ୍ତି । ନର୍ମର ପ୍ରମୁଖ ତତ୍ତ୍ୱ ହେଉଛି ହାସ୍ୟ । ନର୍ମର ମଧ୍ୟ ତିନୋଟି ଭେଦ ରହିଛି ; ଯଥା - ହାସ୍ୟଯୁକ୍ତ ନର୍ମ, ଶୃଙ୍ଗାରଯୁକ୍ତ ନର୍ମ ଏବଂ ଭୟଯୁକ୍ତ ନର୍ମ । ଶୃଙ୍ଗାରଯୁକ୍ତ ନର୍ମ ତିନିପ୍ରକାରର (କ) ଆତ୍ମୋପକ୍ଷେପରକ ବା ସ୍ୱାନୁରାଗ ନିବେଦନ, ଯେଉଁଠି ନାୟକ ନାୟିକା ନିଜ ନିଜର ପ୍ରେମ ପ୍ରକଟ କରିଥାନ୍ତି (ଖ) ସମ୍ଭୋଗପରକ ବା ସମ୍ଭୋଗେଚ୍ଛା ପ୍ରକାଶନ, ଯେଉଁଠି ସମ୍ଭୋଗ ଇଚ୍ଛା ପ୍ରକଟ କରାଯାଏ । (ଗ) ମାନପରକ, ଯେଉଁଠି ନାୟକ ଯେତେବେଳେ ଅନିଷ୍ଟ କରେ, ସେଠି ନାୟିକା ମାନ କରେ । ଭୟଯୁକ୍ତ ନର୍ମ ଦୁଇପ୍ରକାର ଯଥା - ଶୁଦ୍ଧ, ଅଙ୍ଗ ବା ରସାନୁରଙ୍ଗ । ହାସ୍ୟଯୁକ୍ତ ବା ଶୁଦ୍ଧ ନର୍ମର ଗୋଟିଏ ଭେଦ ଥାଏ । ମୋଟ ଛ'ଟି ଭେଦ ଥାଏ । ନର୍ମକୁ ପ୍ରକାଶ କରିବା ପାଇଁ ତିନୋଟି ସାଧନ ମଧ୍ୟ ରହିଛି ; ଯଥା - ବାଣୀ, ବେଶଭୂଷା ଏବଂ ଚେଷ୍ଟା । ଏହିପରି ନର୍ମର ଭେଦ ୩ × ୬ = ୧୮ ହେଉଛି ।

ବିଶ୍ୱନାଥ ନର୍ମସ୍ଫିଞ୍ଜକୁ ଅନ୍ୟ ଏକ ନାମ 'ନର୍ମସ୍ଫୂର୍ଜ' ଦେଇଛନ୍ତି । ଯେଉଁଠାରେ ନାୟକ ନାୟିକା ମିଳନ ପୂର୍ବରୁ ସୁଖ ପାଇଥାନ୍ତି, ତାକୁ ନର୍ମସ୍ଫିଞ୍ଜ କୁହାଯାଏ । ଯେଉଁଠି ସାତ୍ତ୍ୱିକ ଆଦି ଭାବର ଲେଶମାତ୍ର ଦ୍ୱାରା ରସର ସୂଚନା ଦିଆଯାଏ, ତାକୁ ନର୍ମସ୍ଫୋଟ କୁହାଯାଏ । କୌଣସି ପ୍ରୟୋଜନ ନିମିତ୍ତ ନାୟକ ଯେତେବେଳେ ପ୍ରଚ୍ଛନ୍ନ ରୂପେ ବା ଲୁଚିକରି ପ୍ରବେଶ କରେ, ତାକୁ ନର୍ମଗର୍ଭ କହନ୍ତି । ରତ୍ନାବଳୀ, ମାଳତୀମାଧବରେ ଏହାର ଉଦାହରଣ ଦେଖିବାକୁ ମିଳେ ।

## ସାତ୍ୱତୀ ବୃତ୍ତି

ଯେଉଁଠି ନାୟକର କାର୍ଯ୍ୟ ଶୋକହୀନ ଏବଂ ଯେଉଁଠାରେ ସତ୍ତ୍ୱ, ଶୌର୍ଯ୍ୟ, ତ୍ୟାଗ, ହର୍ଷ, ଦୟା, କୋମଳତା, ଆତ୍ମତ୍ୟାଗ, ସାହସ ଆଦି ଭାବ ଥାଏ, ତାହାକୁ ସାତ୍ୱତୀ ବୃତ୍ତି

କୁହାଯାଏ । ଏସବୁ ଗୁଣ ବ୍ୟତୀତ ସାତ୍ୱତୀ ବୃତ୍ତିରେ ଯତ୍‌କିଞ୍ଚିତ୍ ଶୃଙ୍ଗାର ଏବଂ ଅଦ୍ଭୁତ ରସର ପ୍ରାଧାନ୍ୟ ଦେଖିବାକୁ ମିଳେ ବୋଲି ବିଶ୍ୱନାଥ ମତ ଦିଅନ୍ତି । ଏହି ବୃତ୍ତିର ଚାରୋଟି ଅଙ୍ଗ ଥାଏ ; ଯଥା - ସଂଳାପ ବା ସଂଳାପକ, ଉତ୍‌ଥାପକ, ସାଂଘାତ୍ୟ ଏବଂ ପରିବର୍ତ୍ତକ ।

ଯେଉଁଠି ପାତ୍ରମଧ୍ୟରେ, ପରସ୍ପର ବିଭିନ୍ନ ଭାବ ତଥା ରସଯୁକ୍ତ ଗମ୍ଭୀର ଉକ୍ତି ମିଳେ, ସେଠାରେ ସାତ୍ୱତୀ ବୃତ୍ତିର ସଂଳାପ ବା ସଂଳାପକ ହୋଇଥାଏ । ଯେଉଁଠି ଗୋଟିଏ ପାତ୍ର ଅନ୍ୟ ପାତ୍ରକୁ ଯୁଦ୍ଧ ନିମିତ୍ତ ଉତ୍‌ଥାପିତ ବା ଉତ୍ତେଜିତ କରେ, ସେଠାରେ ସାତ୍ୱତୀ ବୃତ୍ତିର ଉତ୍‌ଥାପକ ଅଙ୍ଗ ହୋଇଥାଏ । ପୁଣି ମଧ୍ୟ ଶତ୍ରୁକୁ ଉତ୍ତେଜନା ଦେଉଥିବା ବାଣୀକୁ ଉତ୍‌ଥାପକ କୁହାଯାଏ । ଯେଉଁଠି ଶତ୍ରୁ ବା ପ୍ରତିନାୟକ ସଂଘର ଭେଦନ, ତିନୋଟି ଶକ୍ତି ଯଥା - ମନ୍ତ୍ର ଶକ୍ତି, ଅର୍ଥ ଶକ୍ତି ଏବଂ ଦେବ ଶକ୍ତିର ସହାୟତା ଦ୍ୱାରା କରାଯାଏ, ସେଠାରେ ସାତ୍ୱତୀ ବୃତ୍ତିର ସାଂଘାତ୍ୟ ନାମକ ଅଙ୍ଗ ହୋଇଥାଏ । ଯେଉଁଠି ପୂର୍ବରୁ ଆରମ୍ଭ କରାଯାଇଥିବା କୌଣସି କାର୍ଯ୍ୟକୁ ଛାଡ଼ି ଆଉ ଏକ କାର୍ଯ୍ୟ କରାଯାଏ, ସେଠାରେ ସାତ୍ୱତୀ ବୃତ୍ତିର ପରିବର୍ତ୍ତକ ଅଙ୍ଗ ହୋଇଥାଏ । ମୁଦ୍ରାରାକ୍ଷସ ଏବଂ ମହାବୀର ଚରିତରେ ସାତ୍ୱତୀ ବୃତ୍ତିର ଉଦାହରଣ ଦେଖାଯାଏ ।

## ଆରଭଟୀ ବୃତ୍ତି

ଏହା ହେଉଛି ଏକ ପ୍ରକାର ଉଦ୍ଧତ ବୃତ୍ତି । ଏଥିରେ ଇନ୍ଦ୍ରଜାଲ, ମାୟା, ସଂଗ୍ରାମ, କ୍ରୋଧ, ଚେଷ୍ଟା, ବଧ, ଉଦ୍‌ଭ୍ରାନ୍ତ, ବନ୍ଧନ ଇତ୍ୟାଦି ଦେଖିବାକୁ ମିଳେ । ମାୟାରେ ଅବାସ୍ତବ ବସ୍ତୁକୁ ମନ୍ତ୍ର ବଳରେ ପ୍ରକାଶିତ କରାଯାଏ । ଏହି କାର୍ଯ୍ୟ ତନ୍ତ୍ର ବଳରେ ହେଲେ, ତାହାକୁ 'ଇନ୍ଦ୍ରଜାଲ' କହନ୍ତି । ଆରଭଟୀ ବୃତ୍ତିର ଚାରୋଟି ଅଙ୍ଗ ରହିଛି ; ଯଥା - ସଂକ୍ଷିପ୍ତିକା, ସମ୍‌ଫେଟ, ବସ୍ତୁ ଉତ୍‌ଥାପନ, ଅବପାତ ।

ସଂକ୍ଷିପ୍ତିକାରେ ନାଟ୍ୟକାର ଶିଳ୍ପପ୍ରୟୋଗ କରି ସଂକ୍ଷିପ୍ତ ବସ୍ତୁର ନିର୍ମାଣ କରେ । ମାଟି, ଚମଡ଼ା, ବାଉଁଶ, ପତ୍ର ଆଦିରେ କୌଣସି ଘର ବା ଅନ୍ୟ କୌଣସି ବସ୍ତୁର ନିର୍ମାଣକୁ ସଂକ୍ଷିପ୍ତିକା କୁହାଯାଏ । ଯେଉଁଠି ଦୁଇଟି ଚରିତ୍ର ପରସ୍ପରକୁ ଆଘାତ ଦିଅନ୍ତି, ସେଠାରେ ଆରଭଟୀ ବୃତ୍ତିର ସମ୍‌ଫେଟ ହୋଇଥାଏ । ମନ୍ତ୍ରବଳରେ ମାୟାଦ୍ୱାରା କୌଣସି ବସ୍ତୁର ଉତ୍‌ଥାପନାକୁ ବସ୍ତୁ ଉତ୍‌ଥାପନ କହନ୍ତି । କୌଣସି ପାତ୍ର ମଞ୍ଚକୁ ଆସିଲେ ବା ମଞ୍ଚରୁ ଚାଲିଗଲେ, ଅନ୍ୟ ପାତ୍ର ଭିତରେ ଯେଉଁ ଭୟ ବା କମ୍ପନ ଜାତ ହୁଏ, ତାହାକୁ ଅବପାତ କୁହାଯାଏ ।

### ଦ୍ୱିତୀୟ ଅଧ୍ୟାୟ

# ନାଟକର ଉତ୍ପତ୍ତି ସିଦ୍ଧାନ୍ତ

ନାଟକର ଉତ୍ପତ୍ତି ସମ୍ପର୍କରେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଗବେଷକମାନେ ଭିନ୍ନ ଭିନ୍ନ ମତପୋଷଣ କରନ୍ତି । ସଂସ୍କୃତ ସାହିତ୍ୟରେ ନାଟକ ଶବ୍ଦ ରୂପକ ଅର୍ଥରେ ପ୍ରଯୋଜିତ । ତେବେ ନାଟ୍ୟକଳା ଦୃଷ୍ଟିରୁ ବିବେଚନା କଲେ ଆମେ ସଂସ୍କୃତରେ ନାଟ୍ୟ, ନଟ ଆଦି ଶବ୍ଦ ପାଇଥାଉ । ନଟ୍ ଧାତୁରୁ ନାଟ୍ୟ, ନାଟକ, ନଟ ଆଦି ଶବ୍ଦ ଆସିଥିବା ଜଣାଯାଏ । କେହି କେହି ଗବେଷକ ମତ ଦିଅନ୍ତି ଯେ ପ୍ରଥମେ ଆସିଛି ନୃତ୍ୟ ଏବଂ ତା'ପରେ ସଙ୍ଗୀତ ଓ ଶେଷରେ ଗଦ୍ୟାୟିତ ଭାଷାର ଉଦ୍ଭବ ହୋଇଛି । ନୃତ୍ୟ ପରେ ପରେ ନାଟ୍ୟ ଆସିଛି, ଏକଥା ବହୁ ଆଲୋଚକ ସ୍ୱୀକାର କରନ୍ତି । ତେବେ ନୃତ୍ୟ ଏବଂ ନାଟ୍ୟ ଏକ ନୁହେଁ । ଉଭୟର ମିଶ୍ରଣରେ ନାଟ୍ୟକଳା ସମୁନ୍ନତ । ନାଟ୍ୟକଳାର ବିଶେଷ ଉପାଦାନଗୁଡ଼ିକ (ନୃତ୍ୟ, ଗୀତ, ବାଦ୍ୟ, ସଂଳାପ, ଚିତ୍ରକଳା, ଅଭିନୟ) ମଧ୍ୟରୁ ନୃତ୍ୟ ଏବଂ ନାଟ୍ୟ ଅନ୍ୟତମ । ନୃତ୍ୟରେ ମାନବର କଳାତ୍ମକ ଅଭିବ୍ୟକ୍ତି ନିହିତ ଥିଲେ ହେଁ ନାଟ୍ୟ ମଧ୍ୟରେ ଏହାର ବିକାଶ ସାଧିତ ହୋଇଛି ।

ପ୍ରାଚ୍ୟ ପରମ୍ପରାରେ ନାଟକର ଉତ୍ପତ୍ତି ନେଇ ବହୁ ପୌରାଣିକ କାହାଣୀର ଅବତାରଣା କରାଯାଇଛି । ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଏହାର ପ୍ରମାଣ ରହିଛି । ଥରେ ଜମ୍ବୁଦ୍ୱୀପର ଲୋକମାନେ ଈର୍ଷା, କ୍ରୋଧ, କାମ, ଲୋଭର ବଶବର୍ତ୍ତୀ ହୋଇ ନିଜ ନିଜର ପ୍ରବୃତ୍ତି ହରାଇ ବସିଲେ । ତେଣୁ ଦେବ, ମାନବ, ଗନ୍ଧର୍ବ, ଯକ୍ଷ, ରକ୍ଷଃ ଆଦି ସମସ୍ତେ ମହେନ୍ଦ୍ରଙ୍କ ନେତୃତ୍ୱରେ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରାର୍ଥନା କଲେ । ସେମାନେ ଉଭୟ ଶ୍ରାବ୍ୟ ଏବଂ ଦୃଶ୍ୟ ଶକ୍ତି ସମନ୍ୱିତ ଏକ ପଞ୍ଚମବେଦ ସୃଷ୍ଟି ପାଇଁ ବେଦବରଙ୍କୁ ନିବେଦନ କଲେ । ସେତେବେଳେ ବେଦ ଶୂଦ୍ରମାନଙ୍କ ପାଇଁ ନିଷିଦ୍ଧ ଥିଲା । ତେଣୁ ସମସ୍ତଙ୍କ କଲ୍ୟାଣ ଲାଗି ଏପରି ଏକ ପଞ୍ଚମ ବେଦ ସୃଷ୍ଟି ପାଇଁ ସେମାନେ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ ।

ବ୍ରହ୍ମା ଋକ୍‌ବେଦରୁ ପାଠ୍ୟ (କଥାବସ୍ତୁ), ସାମବେଦରୁ ଗାନ (ସଙ୍ଗୀତ), ଯଜୁର୍ବେଦରୁ ଅଭିନୟ ଏବଂ ଅଥର୍ବବେଦରୁ ରସ ଗ୍ରହଣ କରି ଏହି ପଞ୍ଚମ ବେଦ ସୃଷ୍ଟି କଲେ । ନାଟ୍ୟଶାସ୍ତ୍ରରେ ଏହାର ବର୍ଣ୍ଣନା ରହିଛି -

''ମହେନ୍ଦ୍ର ପ୍ରଭୃତି-ର୍ଦେବୈରୁକ୍ତ କିଲ ପିତାମହଃ
କ୍ରୀଡ଼ନୀୟକମିଚ୍ଛାମ ଦୃଶ୍ୟଂ ଶ୍ରାବ୍ୟଂ ଚ ଯତ୍ ଭବେତ୍
ତସ୍ମାତ୍ ସୃଜାପରଂ ବେଦଂ ପଞ୍ଚମଂସାର୍ବବର୍ଣ୍ଣିକମ୍ ।''

**୧.** ପଞ୍ଚମ ବେଦ ସୃଷ୍ଟିହେବା ପରେ ପରେ ବ୍ରହ୍ମା ଇନ୍ଦ୍ରଙ୍କୁ ଏହାର ପ୍ରୟୋଗ ପାଇଁ କହିଲେ । ଦେବତାମାନେ ନାଟ୍ୟକଳା ପାଇଁ ଅଯୋଗ୍ୟ ହୋଇଥିବା କଥା ଇନ୍ଦ୍ର କହନ୍ତେ ଏହାର ପ୍ରୟୋଗ ଭାର ଭରତଙ୍କ ଉପରେ ପଡ଼ିଲା । ଭରତ ତାଙ୍କର ଶତପୁତ୍ରଙ୍କୁ ନେଇ ନାଟ୍ୟବେଦର ପ୍ରୟୋଗ ଭାର ଗ୍ରହଣ କଲେ । ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଇନ୍ଦ୍ରଙ୍କର ବିଜୟ ଉତ୍ସବରେ ନାଟକ ଅଭିନୀତ ହେଲା । ଏହି ନାଟକର କାହାଣୀ ଥିଲା - ଦେବତାମାନଙ୍କର ବିଜୟ ଏବଂ ଅସୁରମାନଙ୍କର ପରାଜୟ । ଏହି ନାଟକ ଅଭିନୟ ଦେଖିବା ପରେ ଦେବତାମାନେ ଖୁବ୍ ଖୁସିହୋଇ ଭରତଙ୍କୁ ବିଭିନ୍ନ ପ୍ରକାର ନାଟ୍ୟ ଉପକରଣ ଉପହାର ଦେଇଥିଲେ । ଦେବରାଜ ଇନ୍ଦ୍ର ନିଜର ଧ୍ୱଜ ଅର୍ପଣ କରିଥିଲେ । ଅସୁରମାନେ ନିଜର ପରାଜୟରେ ବ୍ୟଥିତ ହୋଇ ଅସୁରଦେବତା ବିରୂପାକ୍ଷଙ୍କ ନେତୃତ୍ୱରେ ବହୁ ପ୍ରକାର ବାଧାବିଘ୍ନ ସୃଷ୍ଟି କଲେ । ଏଥିରେ କ୍ରୋଧାନ୍ୱିତ ହୋଇ ଇନ୍ଦ୍ର ନିଜର କେତନ ଦଣ୍ଡ ଉତ୍ତୋଳନ କରି ଅସୁରମାନଙ୍କୁ ପ୍ରହାରି, ଜର୍ଜରିତ କରି ରଙ୍ଗପୀଠରୁ ତଡ଼ିଦେଲେ । ବିଘ୍ନ ବିନାଶନ କରିଥିବାରୁ ଇନ୍ଦ୍ରଧ୍ୱଜର ନାମ ରହିଲା 'ଜର୍ଜର' । ତେଣୁ ଅଭିନୟ ପୂର୍ବରୁ ସବୁ ପ୍ରକାର ବିଘ୍ନର ବିନାଶ ପାଇଁ 'ଜର୍ଜର' ପୂଜାର ବ୍ୟବସ୍ଥା ଥାଏ ।

ରଙ୍ଗପୀଠ ପ୍ରତି ବିପଦ ଦୂର ହୋଇଥିଲେ ମଧ୍ୟ ନାଟ୍ୟବେଦ ପ୍ରତି ଆପଦର ଆଶଙ୍କା କରି ଭରତ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ । ବ୍ରହ୍ମାଙ୍କ ନିର୍ଦ୍ଦେଶରେ ବିଶ୍ୱକର୍ମା ରଙ୍ଗାଳୟ ନିର୍ମାଣ କଲେ । ଏହାର ରକ୍ଷଣାବେକ୍ଷଣ ଭାର ରହିଲା ଦେବତାମାନଙ୍କ ଉପରେ । ବ୍ରହ୍ମାଙ୍କ ନିର୍ଦ୍ଦେଶ ଅନୁସାରେ ଉତ୍ତମ, ମଧ୍ୟମ, ଅଧମ ନିର୍ବିଶେଷରେ ଲୋକଚରିତାନୁକରଣ ହେଲା ନାଟ୍ୟବେଦର ପରମ ଉଦ୍ଦେଶ୍ୟ । ଅସୁରମାନଙ୍କ କୋପ ଶାନ୍ତ ହେବା ପରେ ପୁନର୍ବାର ନାଟକ ଅଭିନୟ ଆରମ୍ଭ ହେଲା । ଏହି ରଙ୍ଗାଳୟରେ ଭରତଙ୍କ ଅଧିନାୟକତ୍ୱରେ ଅଭିନୀତ ହେଲା ଦ୍ୱିତୀୟ ନାଟକ 'ଅମୃତ ମନ୍ଥନ' ବା 'ସମୁଦ୍ର ମନ୍ଥନ' । ପରେ ପରେ ଶିବପାର୍ବତୀଙ୍କ ବିବାହ ଉପଲକ୍ଷେ ହିମାଳୟଙ୍କ ରାଜପ୍ରାସାଦରେ ଅଭିନୀତ ହେଲା ତୃତୀୟ ନାଟକ 'ତ୍ରିପୁରଦାହ' । ନଟରାଜ ଶିବ ସେତେବେଳେ ନାଟକରେ ନୃତ୍ୟର ଅଭାବ ଅନୁଭବ କରି ନିଜ ଶିଷ୍ୟ ତଣ୍ଡୁଙ୍କୁ ନୃତ୍ୟ ଶିକ୍ଷା ଦେବାକୁ ଆଦେଶ ଦେଇଥିଲେ । ତାଙ୍କ ନାମ ଅନୁସାରେ ଏହି ନୃତ୍ୟର ନାମ ହେଲା 'ତାଣ୍ଡବ ନୃତ୍ୟ' ।

ଭାରତବର୍ଷରେ ନାଟକର ପରିପ୍ରସାର ସମ୍ପର୍କରେ ମତଦେବାକୁ ଯାଇ ଆଲୋଚକ ସର୍ବେଶ୍ୱର ଦାଶ କହନ୍ତି - ''ଭରତଙ୍କ ପରିଚାଳନାରେ ଅଭିନୀତ ପରବର୍ତ୍ତୀ ନାଟକର ନାମ 'ଲକ୍ଷ୍ମୀସ୍ୱୟଂବର' । ଏହି ଅଭିନୟରେ ଲକ୍ଷ୍ମୀଙ୍କ ଭୂମିକାରେ ଅବତୀର୍ଣ୍ଣା ଉର୍ବଶୀ

ଦର୍ଶକମଣ୍ଡଳୀରେ ଉପବିଷ୍ଟ ପୁରୁରବାଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ଚିତ୍ତଚାଞ୍ଚଲ୍ୟବଶତଃ ପୁରୁଷୋତ୍ତମ ପରିବର୍ତ୍ତେ ପୁରୁରବା ବୋଲି ଉଚ୍ଚାରଣ କରନ୍ତେ ଭରତମୁନି କ୍ରୁଦ୍ଧ ହୋଇ ମର୍ତ୍ତ୍ୟଭୂମିକୁ ଯାଇ ରହିବାକୁ ତାହାଙ୍କୁ ଅଭିଶାପ ପ୍ରଦାନ କରିଥିଲେ । ଥରେ ଜମ୍ବୁଦ୍ୱୀପରେ ରାଜା ନହୁଷ ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗକୁ ନିଜ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । ବିଜୟୀ ରାଜାଙ୍କ ଆଦେଶରେ ଭରତ ନାଟ୍ୟବେଦର ପ୍ରଚାର ପାଇଁ ତାଙ୍କର ଶିଷ୍ୟ କୋହଳ, ଶାଣ୍ଡିଲ୍ୟ, ଧୂରୀତ ଏବଂ ବାତ୍ସ୍ୟଙ୍କୁ ଅନ୍ୟାନ୍ୟ ଅନେକ ଅଭିନେତା ଏବଂ ଅଭିନେତ୍ରୀଙ୍କ ସହ ଜମ୍ବୁଦ୍ୱୀପକୁ ପଠାଇଥିଲେ । ଏହି ନଟନଟୀଙ୍କ ମଧ୍ୟରୁ କେତେକ ଭାରତବର୍ଷର ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଏଠାରେ ବସବାସ କରି ରହିଗଲେ । ଏମାନଙ୍କ ବଂଶଧରମାନେ ନଟ ନାମରେ ପରିଚିତ ।''

(ନାଟକ ବିଚାର : ସର୍ବେଶ୍ୱର ଦାଶ, ପୃ.୧୬)

୨. 'ତ୍ରିପୁର ଦାହ' ନାଟକରେ ଶିବତାଣ୍ଡବ ନୃତ୍ୟ ଏବଂ ପାର୍ବତୀ ଲାସ୍ୟନୃତ୍ୟର ସଂଯୋଗ କରିଥିଲେ । 'ଭାବପ୍ରକାଶନମ୍'ର ରଚୟିତା 'ଶାରଦାତନୟ' ଏ ସମ୍ପର୍କରେ ନିଜ ମନ୍ତବ୍ୟ ଦେଇ କହିଛନ୍ତି ଯେ, ଶିବ ଆଜ୍ଞାରେ ନନ୍ଦି ବ୍ରହ୍ମାଙ୍କୁ 'ଗନ୍ଧର୍ବ ବେଦ'ର ସମସ୍ତ ତତ୍ତ୍ୱ ଶିକ୍ଷା ଦେଇଥିଲେ ଏବଂ ତାହାପରେ ବ୍ରହ୍ମାଙ୍କଦ୍ୱାରା ନଟ କଳ୍ପିତ ହୋଇଥିଲା । ପଞ୍ଚଶିଷ୍ୟ ସମଭିବ୍ୟାହାରରେ ଜଣେ ଋଷି ଆବିର୍ଭୂତ ହୋଇ ବ୍ରହ୍ମାଙ୍କଠାରୁ ନାଟ୍ୟବେଦ ଗ୍ରହଣ କରିଥିଲେ । ସେ ହେଉଛନ୍ତି ଆଚାର୍ଯ୍ୟ ଭରତ ଏବଂ ନାଟକର ପ୍ରଥମ ବ୍ୟବସ୍ଥାପକ ।'' (ଓଡ଼ିଆ ନାଟକର ବିକାଶଧାରା : ହେମନ୍ତ କୁମାର ଦାସ, ପୃ. ୪)

୩. ଭାରତରେ ବହୁ ପ୍ରାଚୀନ କାଳରୁ ନାଟକର ସୃଷ୍ଟି ହୋଇଥିବା ପ୍ରମାଣ ମିଳେ । ବେଦକୁ ଲକ୍ଷ୍ୟକଲେ ଏହାର ସ୍ୱରୂପ ଜଣାପଡ଼େ । ଋକ୍‌ବେଦର ସଂଳାପସୂକ୍ତଗୁଡ଼ିକ ଏହାର ଜ୍ୱଳନ୍ତ ଉଦାହରଣ । ଏହାର ଗୀତିକବିତା, ସଂଳାପ ଏବଂ ଆଖ୍ୟାୟିକାଗୁଡ଼ିକରେ ନାଟକର ବୀଜ ନିହିତ ଥିବା ଅନୁମାନ କରାଯାଏ । ସୂର୍ଯ୍ୟ, ପର୍ଜନ୍ୟ, ମରୁତ, ଅଗ୍ନି, ଇନ୍ଦ୍ର ଏବଂ ଉଷସ ମନ୍ତ୍ରଗୁଡ଼ିକର ସାଙ୍ଗୀତିକ ଆବେଦନ ତଥା ଭାଷାର ସୌକୁମାର୍ଯ୍ୟରେ ନାଟକର ଆଦିମ ରୂପର ଆଭାସ ମିଳିଥାଏ । ଏହାଛଡ଼ା ଋକ୍‌ବେଦର ସମ୍ବାଦସୂକ୍ତଗୁଡ଼ିକ ନାଟକର ସୃଷ୍ଟି ପର୍ଯ୍ୟାୟ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୁରୁରବା - ଉର୍ବଶୀ, ଯମ-ଯମୀ, ଇନ୍ଦ୍ର-ଇନ୍ଦ୍ରାଣୀ, ସରମା-ପଣି ଆଦି ସଂଳାପସୂକ୍ତଗୁଡ଼ିକର ନାଟକୀୟତ୍ୱ ଏ ଦୃଷ୍ଟିରୁ ପ୍ରଣିଧାନ ଯୋଗ୍ୟ ।

୪. ବୈଦିକ ଧର୍ମାନୁଷ୍ଠାନରେ ମଧ୍ୟ ନାଟକର ଆଦି ବୀଜର ସନ୍ଧାନ ମିଳେ । ବୈଦିକ ଯୁଗରେ ରାଜା, ସମ୍ଭ୍ରାନ୍ତମାନେ ଦେବତାଙ୍କ ସନ୍ତୋଷ ଲାଗି ସୋମ, ଅଶ୍ୱମେଧ ଆଦି ଯଜ୍ଞ ଅନୁଷ୍ଠାନ କରୁଥିଲେ । ଏହିସବୁ ଯଜ୍ଞାନୁଷ୍ଠାନରେ ମାତ୍ର ଚାରିଜଣ ବ୍ରାହ୍ମଣ ମୁଖ୍ୟ କାର୍ଯ୍ୟରେ ଭାଗ ନେଉଥିଲେ । ହ୍ରୋଣ ଋକ୍ ଉଚ୍ଚାରଣ କଲାବେଳେ, ଉଦ୍‌ଗାତା ବ୍ରାହ୍ମଣ 'ସାମ' ଗାଉଥିଲେ । ଅଧ୍ୱର୍ଯ୍ୟୁ ବ୍ରାହ୍ମଣ ଗଦ୍ୟାୟିତ ମନ୍ତ୍ରଧ୍ୱନି କରିବା ବେଳେ, 'ବ୍ରହ୍ମା' ବ୍ରାହ୍ମଣ

ସବୁ ପ୍ରକାର ବିଘ୍ନରୁ ଯଜ୍ଞକୁ ରକ୍ଷା କରିବାର ପ୍ରଯତ୍ନ କରୁଥିଲେ । ଦ୍ରୋଣଙ୍କର ଋକ୍ ମନ୍ତ୍ରପାଠରୁ ସଂଳାପ, ଉଦ୍‌ଗାତାଙ୍କ 'ସାମ'ରୁ ଗୀତ, ଅଧ୍ୱର୍ଯ୍ୟୁଙ୍କ ଗଦ୍ୟାୟିତ ମନ୍ତ୍ରରୁ ଅଭିନୟର ବିକାଶ ହୋଇଥିବା ଅନୁମାନ କରାଯାଏ ।

**୫.** ଭାରତୀୟ ନାଟ୍ୟକଳାର ଉତ୍ପତ୍ତି ସମ୍ପର୍କରେ 'ସଙ୍ଗୀତ ଦାମୋଦର' ଗ୍ରନ୍ଥରେ ଏକ ଗଳ୍ପର ଉଲ୍ଲେଖ ଅଛି । ଦେବତା-ଅସୁରମାନଙ୍କ ସଂଗ୍ରାମରେ ଦେବତାମାନେ ବିଜୟ ଲାଭ କଲେ । ଏହି ବିଜୟ ଉପଲକ୍ଷ୍ୟରେ ଇନ୍ଦ୍ରଙ୍କ ଖୁସି ପାଇଁ ବ୍ରହ୍ମା ପଞ୍ଚମ ବେଦ ସୃଷ୍ଟି କଲେ । ଗନ୍ଧର୍ବ ବିଦ୍ୟାକୁ ବ୍ରହ୍ମା ଶିବଙ୍କଠାରୁ ଶିକ୍ଷାକରି ଭରତମୁନିଙ୍କୁ ଶିକ୍ଷା ଦେଉଥିଲେ । ବ୍ରହ୍ମାଙ୍କ ନିର୍ଦ୍ଦେଶରେ ମର୍ତ୍ତ୍ୟମଣ୍ଡଳରେ ଭରତ ଏହି ଗନ୍ଧର୍ବ ବିଦ୍ୟା ବା ନାଟ୍ୟବିଦ୍ୟାର ପରିପ୍ରସାର ଘଟାଇଥିଲେ ।

**୬.** ଶାରଦାତନୟଙ୍କ 'ଅଭିନୟ ଦର୍ପଣ'ରେ ମଧ୍ୟ ନାଟକର ଉଦ୍ଭବ ସମ୍ପର୍କରେ ଏକ କାହାଣୀ ଦେଖାଯାଏ । ରାଜ୍ୟ ଶାସନରେ ବ୍ୟସ୍ତ ରହି କିଛି ସମୟ ଆନନ୍ଦ ପାଇବା ପାଇଁ ଏକ ଉପାୟ ବାହାର ଲାଗି ସ୍ୱୟମ୍ଭୁବ ମନୁ ନିଜ ପିତା ସୂର୍ଯ୍ୟଙ୍କୁ ଅନୁରୋଧ କଲେ । ସୂର୍ଯ୍ୟ ମନୁଙ୍କୁ ନାଟ୍ୟ ବିଷୟରେ ଏକ ଉପାୟ ଯୋଗାଇ ଦେଲେ । ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କଲା ପରେ ବ୍ରହ୍ମା କ୍ଳାନ୍ତ ହୋଇ ପଡ଼ିବାରୁ ସେ ମହାବିଷ୍ଣୁଙ୍କ ନିକଟରେ ଅବସର ବିନୋଦନାର୍ଥେ ପ୍ରାର୍ଥୀ ହେଲେ । ମହାବିଷ୍ଣୁ ତାଙ୍କୁ ଶିବଙ୍କ ନିକଟକୁ ପଠାଇଲେ । ଶିବ ନିଜର ଅନୁଚର ନନ୍ଦିଙ୍କୁ ଆଦେଶ ଦେଲେ ଗାନ୍ଧର୍ବବିଦ୍ୟା ଶିକ୍ଷା ଦେବାପାଇଁ । ବ୍ରହ୍ମା ସେହି ଶିକ୍ଷା ଗ୍ରହଣ କରି ଜଣେ ଋଷି ଏବଂ ତାଙ୍କର ୫ଜଣ ଶିଷ୍ୟଙ୍କୁ ଶିଖାଇଲେ ଏବଂ ତାହାର ପ୍ରୟୋଗ ପାଇଁ ନିର୍ଦ୍ଦେଶ ଦେଲେ । ଏହି ପ୍ରୟୋଗକର୍ତ୍ତାମାନଙ୍କ କାର୍ଯ୍ୟରେ ଖୁସି ହୋଇ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳରେ ସେମାନେ 'ଭରତ' ହେବ ବୋଲି ମଧ୍ୟ କହିଲେ, ସୂର୍ଯ୍ୟଙ୍କଠାରୁ ଏ ସମସ୍ତ ବିଷୟ ଶୁଣିଲା ପରେ ମନୁ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ, ବ୍ରହ୍ମା ମନୁଙ୍କ ଅନୁରୋଧ ରକ୍ଷା କରି ଭରତମାନଙ୍କୁ ଗାନ୍ଧର୍ବ ବିଦ୍ୟାର ପ୍ରସାର ଲାଗି ଭାରତବର୍ଷକୁ ପଠାଇଲେ । ପ୍ରଥମେ ଏମାନଙ୍କଦ୍ୱାରା ଅଯୋଧ୍ୟାରେ ଓ ପରେ ପରେ ଅନ୍ୟ ପ୍ରାନ୍ତରେ ନାଟ୍ୟକଳାର ପରିପ୍ରସାର ଘଟିଥିଲା ।

**୭.** ଭାରତଭୂମିରେ ପ୍ରଥମ ନାଟ୍ୟକଳାର ଉଦ୍‌ଗାତା ଥିଲେ ଦ୍ରାବିଡ଼ମାନେ । ଅନାର୍ଯ୍ୟ ବା ଦ୍ରାବିଡ଼ମାନଙ୍କ ମଧ୍ୟରେ ନୃତ୍ୟଗୀତ ବହୁପୂର୍ବରୁ ଥିଲା । ଆର୍ଯ୍ୟମାନେ ଭାରତରେ ବସବାସ କଲାପରେ ସେମାନଙ୍କଦ୍ୱାରା ପ୍ରଭାବିତ ହୋଇ ନାଟ୍ୟକଳାର ବିକାଶ ସାଧନ କରିଥିବା ମନେହୁଏ । ଦାକ୍ଷିଣାତ୍ୟ ବା ଅନାର୍ଯ୍ୟ ଭୂଖଣ୍ଡରେ ନୃତ୍ୟଗୀତର ପ୍ରସାର ଏବେ ବି ଅକ୍ଷୁଣ୍ଣ ରହିଆସିଛି । ନାଟ୍ୟଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି ଅନାର୍ଯ୍ୟ ରାଜା ବାଣାସୁରର କନ୍ୟା ଉଷା ଦ୍ୱାରକାର ମହିଷୀମାନଙ୍କୁ ଲାସ୍ୟନୃତ୍ୟ ଶିକ୍ଷା ଦେଇଥିଲେ । ଏହିପରି ଭାବରେ ଦେଖିଲେ ପ୍ରଥମେ ଦ୍ରାବିଡ଼ ବା ଅନାର୍ଯ୍ୟ ସଂପ୍ରଦାୟରେ ନାଟ୍ୟକଳା ଗଢ଼ି ଉଠିଥିଲା ।

୮. 'ଅଭିନବ ଦର୍ପଣ'ରେ ନନ୍ଦୀକେଶର ନାଟ୍ୟର ଉତ୍ପତ୍ତି ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଭରତଙ୍କୁ ସମର୍ଥନ କରିଛନ୍ତି । ସେ କହିଛନ୍ତି, ବ୍ରହ୍ମା ଋଗ୍‌ବେଦରୁ ପାଠ୍ୟ, ଯଜୁର୍ବେଦରୁ ଅଭିନୟ, ସାମବେଦରୁ ଗୀତ ଏବଂ ଅଥର୍ବବେଦରୁ ରସ ନେଇ ଧର୍ମ, ଅର୍ଥ, କାମ ମୋକ୍ଷ ପ୍ରଦାନକାରୀ ଏହି ନାଟ୍ୟଶାସ୍ତ୍ର ସୃଷ୍ଟି କରିଛନ୍ତି । ସର୍ବପ୍ରଥମେ ଏହି ନାଟ୍ୟବେଦକୁ ସେ ଭରତଙ୍କୁ ହିଁ ଶିକ୍ଷା ଦେଇଛନ୍ତି ।

୯. 'ଦଶରୂପକ'ରେ ପ୍ରାରମ୍ଭରେ ନାଟ୍ୟବେଦ ଉପରେ ମନ୍ତବ୍ୟ ଦେବାକୁ ଯାଇ ଧନଞ୍ଜୟ କହିଛନ୍ତି, ସମ୍ପୂର୍ଣ୍ଣ ନାଟ୍ୟବେଦରୁ ସାରତତ୍ତ୍ୱ ସଂଗ୍ରହ କରି ବ୍ରହ୍ମା ଯେଉଁ ନାଟ୍ୟବେଦ ରଚନା କରିଛନ୍ତି, ଭରତ ଯାହାର ପ୍ରୟୋଗ ଏବଂ ଅଭିନୟ କରାଇଛନ୍ତି, ଯେଉଁଥିରେ ମହାଦେବ ତାଣ୍ଡବ ଏବଂ ପାର୍ବତୀ ଲାସ୍ୟ ନୃତ୍ୟ ସଂଯୋଜନ କରିଛନ୍ତି, ସେହି ନାଟ୍ୟବେଦର ପୂରାପୂରି ଲକ୍ଷଣ କିଏ ବା କହିପାରିବ ?

୧୦. ବେଦ ବ୍ୟତୀତ ଆଦିକବି ବାଲ୍ମୀକି ମଧ୍ୟ ଅଯୋଧ୍ୟାକୁ କହିଛନ୍ତି - ''ବଧୂନାଟକ-ସଂଘୈଶ୍ଚ ସଂଯୁକ୍ତାନ୍'' (ଗଣିକା ଏବଂ ନାଟକମଣ୍ଡଳୀ ଆଦିଦ୍ୱାରା ଯୁକ୍ତ) । ସେ ଆହୁରି ମଧ୍ୟ କହିଛନ୍ତି ଯେ ରାମଙ୍କ ଅଭିଷେକ କାଳରେ ନଟ, ନର୍ତ୍ତକୀ, ଗାୟକମାନେ ସମବେତ ଜନତାଙ୍କୁ ଗୀତ ଏବଂ ମନୋହର ବଚନ ଶୁଣାଉଥିଲେ ।

୧୧. ମହାଭାରତର ହରିବଂଶ ପର୍ବର ଏକାନବେରୁ ସତାନବେ ଅଧ୍ୟାୟ ମଧ୍ୟରେ ବଜ୍ରନାଭ ବଧ ଓ ପ୍ରଦ୍ୟୁମ୍ନ ବିବାହ ପ୍ରସଙ୍ଗରେ ରାମାୟଣ ନାଟକ ଏବଂ 'କୌବେର ରମ୍ଭାଭିସାର' ନାଟକ ପ୍ରୟୋଗର ବିବରଣୀ ମିଳୁଛି । ଏଥିରେ ରହିଛି ଶ୍ରୀକୃଷ୍ଣ ନିଜ ମାୟା ଭିତରୁ ଭଦ୍ର ନାମକ ଏକ ନଟର ଉତ୍ପନ୍ନ କରି ତା' ସାଥିରେ ଭୀମବଂଶୀ ଯାଦବଙ୍କୁ ନଟ ବନାଇ ବଜ୍ରନାଭର ବଜ୍ରପୁରକୁ ପଠାଇଛନ୍ତି । ଏଠାରେ ନାୟକ ହୋଇଛନ୍ତି ପ୍ରଦ୍ୟୁମ୍ନ, ବିଦୂଷକ ହୋଇଛନ୍ତି ଶାମ୍ବ, ପାରିପାର୍ଶ୍ୱିକ ହୋଇଛନ୍ତି ଗଦ । ଅନ୍ୟ ଯାଦବଗଣ ନଟ ହୋଇ ରାମାୟଣ ନାଟକ ଅଭିନୟ କରିଛନ୍ତି । ଏମାନଙ୍କର ଅଭିନୟ ଏତେ ଜୀବନ୍ତ ହେଲା ଯେ ସାରା ଦାନବ ସମାଜ ତାହା ଦେଖି ବିସ୍ମିତ ହୋଇଯାଇଥିଲେ । ଏହି ନାଟକର ଭୂୟସୀ ପ୍ରଶଂସା ଶୁଣି ବଜ୍ରନାଭ ସେମାନଙ୍କୁ ନିଜ ପୁରକୁ ନାଟକ ଦେଖାଇବା ପାଇଁ ନିମନ୍ତ୍ରଣ କରିଥିଲେ ଏବଂ ସେଠାରେ 'କୌବେର ରମ୍ଭାଭିସାର' ନାଟକ ଅଭିନୀତ ହୋଇଥିଲା । ଏଠାରେ ନାଟକ ପ୍ରଦର୍ଶନ ଏତେ ଚମତ୍କାର ହେଲା ଯେ ଦୈତ୍ୟସମାଜ ଏବଂ ସେମାନଙ୍କ ସ୍ତ୍ରୀବର୍ଗ ନିଜ ନିଜର ଅଳଙ୍କାରମାନ କାଢ଼ି ଦାନ କରିଥିଲେ ।

୧୨. ପାଣିନି ନିଜର 'ଅଷ୍ଟାଧ୍ୟାୟୀ' ପୁସ୍ତକରେ ଶିଳାଲୀ ଏବଂ କୃଶାଶ୍ୱ ନଟସୂତ୍ରର ଉଲ୍ଲେଖ କରିଛନ୍ତି । ତେବେ ଏଥିରୁ ବିଶେଷ ବିବରଣୀ ମିଳୁ ନାହିଁ । ବାତ୍ସାୟନ ତାଙ୍କର 'କାମସୂତ୍ର'ର 'ନାମରକବୃତ୍ତପ୍ରକରଣ'ରେ 'ଘଟାନିବନ୍ଧନ' ସ୍ଥାନରେ ଲେଖିଛନ୍ତି ଯେ ମାସର ପର୍ବ ଦିନମାନଙ୍କରେ ସରସ୍ୱତୀ ମନ୍ଦର ବା ବିଦ୍ୟାଳୟମାନଙ୍କରେ ରାଜାଙ୍କ ପକ୍ଷରୁ ନଟମାନଙ୍କଦ୍ୱାରା ନାଟକ ଉତ୍ସବ ହେଉଥିଲା । ସେହି ଗ୍ରନ୍ଥର ଧୂପବିଲେପନଘଟା-ପ୍ରକରଣରେ

କୁହାଯାଇଛି ଯେ ବାହାରୁ ଆସିଥିବା ନଟମାନେ ପ୍ରଥମ ଦିନରେ ସେମାନଙ୍କ ନାଟକ ଦେଖାନ୍ତୁ ଏବଂ ଯଦି କିଛି ରହିଯାଇଛି, ତାହା ଦ୍ୱିତୀୟ ଦିନ ଦେଖାନ୍ତୁ । ଯଦି ତା'ପରେ ବି ଲୋକେ ନାଟ ଦେଖିବାକୁ ଚାହାନ୍ତି, ତେବେ ପୂର୍ବ ବ୍ୟବସ୍ଥା ସହିତ ସେମାନଙ୍କୁ ନାଟ ଦେଖାନ୍ତୁ, ଅନ୍ୟଥା ସେମାନଙ୍କୁ ବିଦା କରିଦେବା ଉଚିତ । ସଙ୍କଟ ଏବଂ ଉତ୍ସବରେ ସେମାନଙ୍କ ସାଥିରେ ସେହି ବ୍ୟବହାର କରାଯିବା ଉଚିତ ଯାହା ରାଜ୍ୟର ନଟମାନଙ୍କ ପ୍ରତି କରାଯାଇଥାଏ ।

**୧୩.** କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ମଧ୍ୟ ନାଟକ ବିଷୟରେ ଉଲ୍ଲେଖ ରହିଛି । ଏହାର ଅଧ୍ୟକ୍ଷ-ପ୍ରଚାର-ଅଧିକରଣର ୨୭ ଅଧ୍ୟାୟରେ ବିଭିନ୍ନ କଳାକାର ଗୋଷ୍ଠୀଙ୍କର ରାଜାଙ୍କୁ କେତେ କର ଦେବେ, ସେ ବିଷୟରେ ଉଲ୍ଲେଖ ରହିଛି । ଯଦି ନଟମଣ୍ଡଳୀ ବାହାର ଦେଶରୁ ଆସିଥାନ୍ତି, ତେବେ ପ୍ରତ୍ୟେକ ଖେଳ ପାଇଁ ରାଜାଙ୍କୁ ପାଞ୍ଚପଣ କରି ଦେବାର ବିଧି ଏଥିରେ ଉଲ୍ଲେଖ ରହିଛି । ଅଭିନୟ କଳା ଶିଖାଉଥିବା ଅନୁଷ୍ଠାନମାନଙ୍କ ପାଇଁ ମଧ୍ୟ ରାଜାଙ୍କ ପକ୍ଷରୁ ବିଭିନ୍ନ ପ୍ରକାର ବ୍ୟବସ୍ଥା କରାଯାଇଥିବା ଏଥିରେ ଉଲ୍ଲେଖ ଅଛି । ଏଥିରୁ ଜଣାପଡୁଛି ଚାଣକ୍ୟଙ୍କ ସମୟ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ନାଟ୍ୟକଳାକୁ ରାଜାଶ୍ରୟ ମିଳିଥିଲା । ଏହାର ଶିକ୍ଷଣ ପାଇଁ ସବୁ ପ୍ରକାର ବ୍ୟବସ୍ଥା ମଧ୍ୟ ଥିଲା । ସ୍ତ୍ରୀମାନେ ମଧ୍ୟ ନାଟକରେ ଭାଗ ନେଉଥିଲେ । ସ୍ଥାୟୀ ରଙ୍ଗଶାଳା ସେତେବେଳେ ନ ଥିଲା । ବିଭିନ୍ନ ପର୍ବପର୍ବାଣି ଅବସରରେ ସେତେବେଳକାର ଅସ୍ଥାୟୀ ରଙ୍ଗଶାଳାରେ ନାଟକ ହେଉଥିଲା ।

**୧୪.** ଚତୁର୍ଥ ଶତାବ୍ଦୀର ଜୈନ ଗ୍ରନ୍ଥରେ ମଧ୍ୟ ନଟନଟୀ ବିଷୟରେ ଉଲ୍ଲେଖ ରହିଛି । ଜୈନଗ୍ରନ୍ଥ 'ରାୟପସେଣୀୟ ସୂକ୍ତ'ରେ ଏ ସମ୍ପର୍କରେ ଏକ କାହାଣୀ ରହିଛି । ଥରେ ଭଗବାନ୍ ମହାବୀର ଆମଳକପ୍ପା ନଗରୀର ଗୋଟିଏ ଅଶୋକ ବୃକ୍ଷ ତଳେ ଥିବା ଏକ ବଡ଼ କଳା ପଥର ଉପରେ ବସିଥିଲେ । ସେହି ସମୟରେ ସେଠାକୁ ସୂର୍ଯ୍ୟପଦେବ ଆସି ଗାଣ ବଜାଣ ଏବଂ ନାଚ ଦେଖାଇ ପ୍ରଥମେ ଭଗବାନ୍‌ଙ୍କୁ ବନ୍ଦନା କରିଥିଲେ ଏବଂ ପରେ ୩୨ ପ୍ରକାର ଅଭିନୟାତ୍ମକ ନାଟକ ଦେଖାଇଥିଲେ । ଅର୍ଥାତ୍ ସେତେବେଳେ ମଧ୍ୟ ମହାପୁରୁଷମାନଙ୍କ ଆଦର ଅଭିନୟ ଦ୍ୱାରା କରାଯାଉଥିଲା ।

**୧୫.** ବୌଦ୍ଧଯୁଗରେ ମଧ୍ୟ ନାଟ୍ୟକଳାର ଆଦର ଥିବା ଜଣାଯାଏ । ରାଜଗୃହରେ ଥରେ ବୁଦ୍ଧଦେବଙ୍କ ସମ୍ମୁଖରେ ତାଙ୍କର ପଞ୍ଚଶିଷ୍ୟ ମୌଦଗଲ୍ୟାୟନ ଏବଂ ଉପତିଷ୍ୟ ଅଭିନୟ ପ୍ରଦର୍ଶନ କରିଥିଲେ । ଲଳିତବିସ୍ତର, ଅବଦାନଜାତକ, ସଦ୍ଧର୍ମପୁଣ୍ଡରୀକ ଆଦି ବୌଦ୍ଧଗ୍ରନ୍ଥରେ ବିଶେଷ ପର୍ବମାନଙ୍କରେ ନାଟକ ଅଭିନୟର ଉଲ୍ଲେଖ ରହିଛି ।

**୧୬.** ଅନେକ ୟୁରୋପୀୟ ବିଦ୍ୱାନ ମଧ୍ୟ ଭାରତୀୟ ନାଟ୍ୟକଳାର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ମତ ପ୍ରଦାନ କରିଯାଇଛନ୍ତି । ମ୍ୟାକ୍ସମୁଲୋର ଋକ୍‌ବେଦର ସରମା-ପଣି, ଯମ-ଯମୀ, ପୁରୁରବା-ଉର୍ବଶୀ, ଇନ୍ଦ୍ର-ମରୁତ, ଦେବ-ଅଗ୍ନି, ଅଗସ୍ତ୍ୟ-ଲୋପାମୁଦ୍ରା ଆଦି

ସମ୍ବାଦସୂକ୍ତକୁ ଭାରତୀୟ ନାଟକର ଆଦିରୂପ ବୋଲି ମତ ଦେଇଛନ୍ତି । ଅନ୍ୟତମ ଆଲୋଚକ ପିଶେଲଙ୍କ ମତ ହେଉଛି ହିନ୍ଦୁ ନାଟକର ଉତ୍ପତ୍ତି କାଂପିତୁଳା ନୃତ୍ୟରୁ । ପୂର୍ବରୁ ଏହି କାଂପିତୁଳାକୁ ସୂତା ସାହାଯ୍ୟରେ ନଚାଯାଉଥିଲା । ବର୍ତ୍ତମାନ ନାଟକର 'ସୂତ୍ରଧାର' ଏହାର ଏକ ରୂପ ବୋଲି ସେ ମତ ଦିଅନ୍ତି । ତେଣୁ ନାଟ୍ୟକଳା କ୍ଷେତ୍ରରେ ପ୍ରୟୋଗ ହୋଇଥିବା 'ସୂତ୍ରଧାର' ଶବ୍ଦ ଏହି କାଂପିତୁଳା ନୃତ୍ୟରୁ ଆସିଥିବା ସେ ଅନୁମାନ କରନ୍ତି । ପଣ୍ଡିତ ପାଣ୍ଡୁରଙ୍ଗ ତାଙ୍କର ଏହି ମତକୁ ସମର୍ଥନ କରୁଥିବାବେଳେ ଆଲୋଚକ ରିଜ୍‌ବେ ଏହାକୁ ଦୃଢ଼ଭାବେ ଖଣ୍ଡନ କରନ୍ତି । ତାଙ୍କ ମତରେ ପୁତଳିକା ନାଟକ ଏବଂ ଛାୟାନାଟକ ବାସ୍ତବ ନାଟକର ଏକ ଶସ୍ତା ଅନୁକରଣ । ଡଃ ପିଶେଲଙ୍କ ମତରେ ମାଳୟ, କାମ୍ବୋଡ଼ିଆ, ଶ୍ୟାମ, ଚୀନ, ବର୍ମା, ଜାପାନ, ଆରବ, ଉତ୍ତରଆଫ୍ରିକା ଆଦି ଅଞ୍ଚଳରେ ଯେଉଁ ଛାୟାନାଟକ ଦେଖାଯାଏ, ସେଥିରୁ ନାଟକର ଜନ୍ମ । ତାଙ୍କର ଏହି ମତକୁ ଲ୍ୟୁଡ଼ର୍ସନ ଏବଂ ଡଃ କୋନୋ ସମର୍ଥନ କରନ୍ତି । ତେବେ ସଂସ୍କୃତର ନାଟ୍ୟଲକ୍ଷଣ ଗ୍ରନ୍ଥରେ ଛାୟା-ନାଟକର କୌଣସି ବିବରଣୀ ମିଳେନି । ସଂସ୍କୃତ ସାହିତ୍ୟରେ କିନ୍ତୁ ୭ଟି ଛାୟା ନାଟକର ସନ୍ଧାନ ମିଳୁଛି ; ଯେଉଁଥିରେ ସର୍ବପ୍ରାଚୀନ ଗ୍ରନ୍ଥ ହେଉଛି 'ଦୂତାଙ୍ଗଦ' । ଅନ୍ୟତମ ଆଲୋଚକ ଉଇଲସନଙ୍କ ମତରେ ଛାୟା ନାଟକ ବାସ୍ତବରେ ନାଟକର ରୂପରେଖକୁ ବୁଝାଇଥାଏ, ପ୍ରଫେସର ଲେବୀ ମଧ୍ୟ କୁଣ୍ଡାର ସହିତ ଏହି ମତକୁ ସମର୍ଥନ କରନ୍ତି । ପିଶେଲ ମଧ୍ୟ ଆଉ ପାଦେ ଆଗେଇଯାଇ ଛାୟାନାଟକକୁ ଅର୍ଦ୍ଧନାଟକ ବୋଲି କହିଛନ୍ତି ; କିନ୍ତୁ ଅନ୍ୟତ୍ର ସେ କହିଛନ୍ତି ଛାୟା ନାଟକର ଅର୍ଥ କେବଳ ଛାୟାଦ୍ୱାରା ନାଟକ ଦେଖାଇବା ।

ଡଃ ରିଜ୍‌ବେ କିନ୍ତୁ ସମସ୍ତ ମତକୁ ଖଣ୍ଡନ କରି ସଂସ୍କୃତ ନାଟକ ରାମଲୀଳା, ରାସଲୀଳା, ଯାତ୍ରା ଉତ୍ସବ ଆଦିର ଉତ୍ପତ୍ତିରୁ ଏହି ପ୍ରକାର ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ବୀରପୂଜାରୁ ନାଟକର ଜନ୍ମ । ଏହିସବୁ କାହାଣୀର ବୀରପୁରୁଷମାନଙ୍କ ପରାକ୍ରମ ଏବଂ କଷ୍ଟର ସ୍ମୃତିକୁ ସମାଜରେ ବଞ୍ଚାଇ ରଖିବା ପାଇଁ ସେମାନଙ୍କ କଥାକୁ ନାଟ୍ୟରୂପ ଦିଆଯାଇଛି । ଏ ମତ ପଛରେ ତାଙ୍କର ଯୁକ୍ତି ହେଲା ସବୁ ନାଟକୀୟ ପ୍ରବୃତ୍ତି ପଛରେ ମୃତ ପୁରୁଷମାନଙ୍କ ପ୍ରତି ଆଦର ଦେଖାଇବାର ପ୍ରବୃତ୍ତି ବିଦ୍ୟମାନ । ଏ ମତ ଭ୍ରମପୂର୍ଣ୍ଣ । ରିଜ୍‌ବେଙ୍କ ମତକୁ ଖଣ୍ଡନ କରି କୀଥ୍ କହିଛନ୍ତି ଯେ ଶୀତ, ଖରା, ବର୍ଷା ଆଦି ପ୍ରକୃତିର ପରିବର୍ତ୍ତନ ତଥା ଗୋଟିଏ ଋତୁ ଉପରେ ଅନ୍ୟ ଗୋଟିଏ ଋତୁର ଆଧିପତ୍ୟ ଦେଖାଇବା ପାଇଁ ନାଟକର ରଚନା କରାଯାଇଛି । ପ୍ରାକୃତିକ ଋତୁ ପରିବର୍ତ୍ତନର ରୂପକାତ୍ମକ ବର୍ଣ୍ଣନା ମଧ୍ୟରୁ ନାଟକର ଜନ୍ମ ହୋଇଥିବା କୀଥ୍ ଅନୁମାନ କରନ୍ତି । କେତେକ ଗବେଷକ ନେପାଳ ରାଜ୍ୟର ଇନ୍ଦ୍ରଧ୍ୱଜ ମହୋତ୍ସବକୁ ଦେଖି ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ଯେପରି ମେ-ପୋଲ ନୃତ୍ୟରୁ ୟୁନାନୀ ନାଟକର ଜନ୍ମ, ସେହିପରି ଇନ୍ଦ୍ରଧ୍ୱଜ-ଉତ୍ସବରୁ ଭାରତୀୟ ନାଟକର ଉତ୍ପତ୍ତି ହୋଇଥିବା ସମ୍ଭବ । ନାଟ୍ୟଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି, ମହେନ୍ଦ୍ରଧ୍ୱଜ ଉତ୍ସବ ଅବସରରେ ନାଟକ ଅଭିନୀତ ହୋଇଛି । ତେଣୁ ଏ ମତ ବିଶେଷ ଫଳପ୍ରଦ ନୁହେଁ ।

